# ମଣିଷ ତଳେ,
# କାନନ ଦଳେ



ଭଗବତ୍ ପ୍ରସାଦ ରଥ

Courage, my brother or my sister,

Liberty is to be subserved, whatever occurs,

That Is nothing, that is quelled by one or two failures,

Or any number of failures ……

—Walt Whitman

ହେ ମୋର ଭାଇ ଭଉଣୀ, ଧୈର୍ଯ୍ୟର ଆଗୁସାର ହୁଅ,

ଯାହାକିଛି ଘଟିଲେ ବି, ସ୍ୱାଧୀନତା ସବୁଠାରୁ ପ୍ରିୟ,

ଗୋଟିଏ ଦୁଇଟି ବିଫଳତା କିମ୍ବା ଅସୁମାରି ବିଫଳତାର
ଆଘାତଖାଇ ସେ ଦବୁଛି ନଇଁ,

କେଉଁଠାରେ ସ୍ଥାନ ତାର କେବେହେଲେ ନାହିଁ… … …



କି ନିଷ୍କରୁଣ, କି ଭୟଙ୍କର ଏଇ ଶତାବ୍ଦୀ !

ଏକ ସ୍ୱତନ୍ତ୍ର ଶ୍ୱାପଦର ଖଣ୍ଡ ନଖଭଳି ଏଇ ଶତାବ୍ଦୀର ଅପରାଧକୁ ଯୁକ୍ତିସିଦ୍ଧ କରିବାର ପ୍ରବଣତା ବାରମ୍ବାର କ୍ଷତ ବିକ୍ଷତ କରିଚି ମାନବିକତାର ଶରୀରକୁ ।

ଅର୍ଦ୍ଧ କୋଟି ଇହୁଦୀର ଅର୍ଦ୍ଧଗଳିତ ଶବ ଉପରେ ତାଣ୍ଡବ ନୃତ୍ୟ ରଚିଛି 'ନାଜୀବାଦ୍' ଅସୁରର ଅନୁଗତ ଭୃତ୍ୟ, ଶିକ୍ଷା ଓ ସଭ୍ୟତାର ଶଙ୍ଖନାଦ କରୁଥିବା ଜାତୀୟବାଦୀ ଜର୍ମାନୀ ।

ପାଗଳ କାପାଳିକ ଭଳି ଦନ୍ତୀ ଦଶନ୍ତୀ ଧରି ଅସୁମାରି ଭିଏଟ୍‌ନାମୀ ଶବ ଖୋଜି ବୁଲୁଛି ଗଣତନ୍ତ୍ରର ଡ୍ରିମ ବାଦକ ଉଲ୍ଲଙ୍ଘମତ୍ତ ଆମେରିକା ।

ଏ ଶତାବ୍ଦୀର ନାଡ଼ି ଚିପିଥିବା କାମ୍ୟୁ ସେଭଳି ଅନ୍ତଃଫାଡ଼ ଚିତ୍କାର କରି ଉଠିଥିଲେ, ଏ ଶତାବ୍ଦୀ ହତ୍ୟାକୁ ଯୁକ୍ତିସିଦ୍ଧ କରିଦେଇଛି, କିନ୍ତୁ ସେ ଚିତ୍କାର ଫ୍ରାନ୍ସର ଆକାଶରେ କ୍ଷୀଣ ଛିନ୍ନସୂତ୍ର ଗୁଡ଼ି ଭଳି ଉଡ଼ି ଉଡ଼ି ଏଇଫେଲ୍ ଟାଓ୍ୱାର୍ ଦେହରେ ଧକ୍‌କା ଖାଇଥିଲା ।

ଆଉ ବୁଦ୍ଧ, ରାମ, କୃଷ୍ଣ, ଗାନ୍ଧୀର ଭାରତ ?

ସ୍ୱାଧୀନୋତ୍ତର ଦିଲ୍ଲୀର ଧୂସର ଆକାଶରେ ଯେଉଁ କ୍ରୁର ଶିକାରୀ ଛଞ୍ଚାଣ ମାନଙ୍କର ଆବର୍ତ୍ତନ ହେଲା, ସେମାନଙ୍କର ପଂଝାରୁ ରାଜଘାଟର ପୀଠରେ ଝରି ପଡ଼ିଲା ଗଣତନ୍ତ୍ର ସମାଜବାଦ କଂଗ୍ରାତର ଟୋପା ଟୋପା ଲହୁ ।

ଅରୁଣାଭ ଆଗକୁ ଚାହିଁଲା ।

ଉଦ୍ଦାମ ନୃତ୍ୟ ଓ ଉଚ୍ଛ୍ୱସିତ ହସ ମାଧ୍ୟମରେ ଯୌବନକୁ ସାର୍ଥକତା ଦାନ କରୁଥିବା ଏକ ତନ୍ୱୀ ଭଳି ସମ୍ମୁଖରେ ବହି ଯାଉଚି କଂସାବତୀ ଛଟିମା ; ଭୋରପୃଷ୍ଠର ଏକ ଉଦ୍ଧଣ୍ଡୀ କନ୍ୟା !

ଅରୁଣାଭ ଗପୁରଡ଼ ମହାବିଦ୍ୟାଳୟରେ ନିଃସଙ୍ଗ ହୋଇ ପଢ଼ୁଥିଲା । ପ୍ରାଗୈତିହାସିକ ଯୁଗର ରକ୍ତ ପିପାସୁ ଡ୍ରାଗନ୍ ମାନଙ୍କ ଭଳି ଯେଉଁ ଭୟଙ୍କର ଜନ୍ତୁମାନେ ରାଜନୀତିର ଜଙ୍ଗଲ ଭିତରୁ ବାହାରି ଆସୁଥିଲେ ; ସେମାନଙ୍କର ବିଭତ୍ସ ଚକ୍ଷୁଗୁଡ଼ିକ ଫୋକସ୍ ହୋଇ ସାରିଥିଲା ଠିକ୍ ତାରି ଉପରେ ।

ସହକର୍ମୀମାନେ ବାରମ୍ବାର ଚେତାବନୀ ଦେଉଥିଲେ, ନେହରୁ ବଂଶର ଗାନ୍ଧୀର ଭାରତ ଆଉ କରମଚନ୍ଦ ଗାନ୍ଧୀର ଭାରତ ମଧ୍ୟରେ ବ୍ୟବଧାନ ବୁଝିବାକୁ ଚେଷ୍ଟାକର ଅରୁଣାଭ । ତା ନହେଲେ ତମେ ସାଂଘାତିକ ଭାବରେ କ୍ଷତଗ୍ରସ୍ତ ହୋଇଯିବ ।

କେତେ ଶୀଘ୍ର ପତନର ଗହ୍ୱର ଆଡ଼େ ଆଗେଇ ଗଲା ଏ ଦେଶ ! ପ୍ରାକ୍-ସ୍ୱାଧୀନ ଭାରତରେ ମୂଲ୍ୟବୋଧର ଯେଉଁ ଆଲୋକ ସ୍ତମ୍ଭଗୁଡ଼ିକ ଗାନ୍ଧୀ ଯୁଗର ଉତ୍ସ୍ନାତ ସାଧକମାନେ ନିର୍ମାଣ କରୁଥିଲେ, ରାଜନୀତି ଚୋରା ବାଲି ମଧ୍ୟରେ ସେଗୁଡ଼ିକ ନିଶ୍ଚିହ୍ନ ହୋଇଗଲେଣି ଅନେକ ଦିନ ହେଲା ।

ବର୍ତ୍ତମାନ ଦେଶସାରା ଚଢ଼ି ଉଠିଛି ଅସଂଖ୍ୟ ଫମ୍ପା ପ୍ରତିଶ୍ରୁତିର ବଣି ବଣି ଭଙ୍ଗା ଖୋଳପା, ପିକ୍‌ନିକ୍ ଶେଷର ଗଦା ଗଦା ଅଇଁଠା ଖଳିପତ୍ର ଭଳି ।

ଅଧ୍ୟାପକ ଜୀବନ ଆଲିଙ୍ଗନ କରିବାକୁ ଯେତେବେଳେ ଉନ୍ମୁଖ ଥିଲା ଅରୁଣାଭ, ସେତେବେଳେ ତା ମନରେ ପବିତ୍ର ସ୍ୱପ୍ନମାନେ ଉଡ଼ିବାର ଆନନ୍ଦରେ ଓଡ଼ଣା ପିନ୍ଧିବା ଆରମ୍ଭ କରିଥିଲେ । ଅରୁଣାଭ ଭାବିଥିଲା ମହାବିଦ୍ୟାଳୟର ଉନ୍ମୁକ୍ତ ପ୍ରାଙ୍ଗଣରେ ପ୍ରାଣ ପ୍ରାଚୁର୍ଯ୍ୟଭରା ତରୁଣ-

ମାନଙ୍କ ମନରେ ସେ ପୋଷିଦେବ ଦେଶଭକ୍ତିର ବୀଜ ଏବଂ ସେମାନଙ୍କ ମଧ୍ୟରୁ ଖୋଳପା ଫଟାଇ ବାହାରକୁ ଚାଲି ଆସିବେ ଗୋପବନ୍ଧୁ, ଚିତ୍ତରଞ୍ଜନ, ସୁବାଷ, ଭଗତସିଂହ ।

ସବୁ ସ୍ୱପ୍ନ ବିଡ଼ମ୍ବିତ । ବିଭିନ୍ନ ରାଜନୀତିଜ୍ଞଙ୍କ ଗୁମସ୍ତମାନଙ୍କର ଉଦ୍ଧତ ପଦକ୍ଷେପରେ ତ୍ରସ୍ତ ହୋଇଉଠିଛି କଲେଜ ବାତାବରଣ ।

ମନ୍ତ୍ରୀଙ୍କ ସମର୍ଥିତ ଛାତ୍ରନେତାମାନେ ସାଜିଛନ୍ତି ସମସ୍ତ ଅଶାଳୀନତା ଓ ଦୁର୍ନୀତିର ପଥ ପ୍ରଣେତା । ମଦ ଦୋକାନ, ହୋଟେଲ ଓ ସିନେମା-ହଲ୍‌ରେ ସେମାନଙ୍କର ଉନ୍ମତ୍ତ କଳରବ ।

ମୁଷ୍ଟିମେୟ ଦାଦାଙ୍କ ହୁଙ୍କାରରେ ଦିନକୁ ଦିନ ବିଷାକ୍ତ ହୋଇ ଉଠୁଛି ମହାବିଦ୍ୟାଳୟର ବାତାବରଣ ।

ବହୁ ମେଧାବୀ ଓ ଚରିତ୍ରବାନ ଛାତ୍ରଙ୍କ ଆଖିରେ ପ୍ରମୂର୍ତ୍ତ ହୋଇ ଉଠୁଛି ଛାତ୍ରଙ୍କର ଆତ୍ମସମର୍ପଣ ବେଳାର ଆର୍ତ୍ତ ଗୁହାରୀ ।

ପଶ୍ଚିମ ଆକାଶରେ ସୂର୍ଯ୍ୟଙ୍କର ଚିତା ପ୍ରଜ୍ୱଳିତ ହୋଇ ସାରିଲାଣି ।

ନିର୍ଜନ ପରିବେଶ ନିର୍ଜନତର ହୋଇ ଉଠିଲାଣି । ଝିଂକାରବ ବନ୍ଦ ଚାଲିଛି ଅବିରାମ ବେଗରେ । ବପୁଗଡ଼ର ଉତ୍କର୍ଷ ଶୋଷଣ ପ୍ରତି ଝିଂକାରବ ନିର୍ବିକାର । ଅମିତାଭର ମନେ ପଡ଼ିଗଲା କବି ମାଥ୍ୟୁ-ଆର୍ନଲ୍ଡଙ୍କ ସୋହ୍ରାବ ଏବଂ ରୁସ୍ତମର କେତୋଟି ଅମର ପଂକ୍ତି ।

ଅକସ୍ମାତ୍ ନୟନକୂଳରେ ଅଭିନୀତ ହୋଇଛି ଏକ ମର୍ମନ୍ତୁଦ ଦୃଶ୍ୟ । ବର୍ଶା ବିଦ୍ଧ ଘାଇ ରୁସ୍ତମ୍‌ଙ୍କ ପଦତଳେ ପଡ଼ି ରହିଛି ତରୁଣଯୋଦ୍ଧା ସୋହ୍ରାବ୍‌ର ଶବ । ରୁସ୍ତମ ନିଜ ହାତରେ ଲିଭାଇ ଦେଇଛନ୍ତି ନିଜର ଉଜ୍ଜ୍ୱଳ ଭବିଷ୍ୟତକୁ । ପୁତ୍ର ସୋହ୍ରାବ କାତର କଣ୍ଠରେ ଅନୁରୋଧ କରି ନଥିଲେ ଏତେବେଳକୁ ରୁସ୍ତମଙ୍କ ତରବାରୀ ନିଜର ବକ୍ଷଦେଶ ଭେଦ କରିସାରନ୍ତାଣି । ନିୟତିର ନିଷ୍ଠୁର ପରିହାସର ଶିକାର ଏଇ ଭାଗ୍ୟହୀନ ପିତାର ଦୁଃଖ ଥିଲା ସାଗର ଭଳି ଗଭୀର ଓ ହିମାଳୟ ଭଳି ବିଶାଳ ।

ଏକ ବିୟୋଗାନ୍ତ ନାଟକର ଅନ୍ତିମ ମନ ମନ୍ଥନକାରୀ ଦୃଶ୍ୟ ଯାହା ତୀରରେ ଅଭିନୀତ ହେଉଛି, ସେଇ ଅକ୍‌ହତ୍‌ନଦୀ ନୀରବରେ ଚାଲିଛି ତାର ଲକ୍ଷ୍ୟ ପଥରେ। ମଣିଷର ସୁଖ ଦୁଃଖପ୍ରତି ସେ ସମ୍ପୂର୍ଣ୍ଣ ଭାବରେ ନିର୍ବିକାର।

ଅରୁଣାଭର ମନ ମନ୍ଥନ ପ୍ରତି ଭ୍ରୂକ୍ଷେପ ନ କରି ଝଂଜାବତୀ ବହିଚାଲିଛି। ଝଂଜାବତୀକୁ ଦେଖି ସେ ସୋଲେକୋଭଙ୍କ ଭଳି କହି ପାରିବନି ଝଂଜାବତୀ ବହେ ଧୀରେ ଧୀରେ। ଝଂଜାବତୀର ଗତି ପ୍ରଖର।

ପଶ୍ଚିମାକାଶରେ ଲିଭି ଆସିଲାଣି ସୂର୍ଯ୍ୟଙ୍କର ଚିତା। ଧୀରେଧୀରେ ଅନ୍ଧାର ଆଗେଇ ଆସୁଚି ଅଙ୍ଗାର ଗୁଣ୍ଡ ଫିଙ୍ଗି ଫିଙ୍ଗି। ଏଇ ଝଂଜା-ବତୀର ତୀରରେ ଏକଦା ଏକ କ୍ଷୁଦ୍ର ପଲ୍ଲୀଭଳି ବିରାଜୁଥିବା ରାୟଗଡ଼ ଆଜି ଏକ ବିରାଟ ସହର।

ରାୟଗଡ଼ର ଅତୀତର ନିର୍ମଳ ଆକାଶ ଆଜି ଧୂମ୍ରାଭ। ରାୟଗଡ଼ର ବୁକୁରୁ ଅବିରତ କ୍ଷୀର ପାନକରି ବଂଶବୃଦ୍ଧି କରି ଚାଲିଛନ୍ତି ଲୌହ ଦାନବମାନେ।

ବହୁ ସମସ୍ୟା କଣ୍ଟକିତ ସହର ରାୟଗଡ଼। ରାୟଗଡ଼ର ପରିବେଶକୁ ଲୁଣ୍ଠନକରି ଯେଉଁ ଚତୁର ଆଗନ୍ତୁକ ଶିଳ୍ପପତିମାନେ ସ୍ଫୀତୋଦର ହୋଇ-ଛନ୍ତି, କୋରାପୁଟର ମାଟିକୁ ଭଲ ପାଇବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇନି। ରାତିର ନିସ୍ତବ୍ଧ ପ୍ରହରରେ ଯେତେବେଳେ ସହରର କୋଳାହଳ ନୀରବ ହୋଇଯାଏ, କାନ୍ଦି ଉଠେ କୋରାପୁଟର ଦୁଃଖିନୀ କନ୍ୟା ନାଗାବଳୀ ନଦୀଟି।

ନାଗାବଳୀ କାଳନାଗ ଦଂଶିତ ବିଷକନ୍ୟା।

ନାଗାବଳୀର ଅଙ୍ଗେ ଅଙ୍ଗେ ଭରି ଯାଇଛି ଗରଳ। ଏ ନାଗାବଳୀ ତୀରର ଦୁର୍ଦ୍ଧର୍ଷ ଆଦିବାସୀ ଯୁବକକୁ ଉପହାର ଦେଉଛି ରୋଗ-ଯନ୍ତ୍ରଣା ଜର୍ଜରିତ ଦେହ।

ଅରୁଣ ହାତ ଘଣ୍ଟାକୁ ଚାହିଁ ଦେଖିଲା ଘଣ୍ଟାକଣ୍ଟା ଆଠଟାଙ୍କ ଡେଇଁ ସାରିଲାଣି । ନିସ୍ତବ୍ଧ ରାତିରେ ଟ୍ରକ୍ କୋଳାହଳମୟ ସହରକୁ ଫେରିବାର ଆଗ୍ରହ ତାର ସ୍ତିମିତ ହୋଇଯାଇଥିଲା । ତଥାପି ତାକୁ ଫେରିବାକୁ ପଡ଼ିବ । ଅନର୍ସ ଶ୍ରେଣୀ ପାଇଁ ପ୍ରସ୍ତୁତି କରିବାକୁ ପଡ଼ିବ ତଥା ଅଂପଷ୍ଟାଚ ସେକ୍ସପିଅରଙ୍କ ବିଭିନ୍ନ ସମାଲୋଚକଙ୍କ ସହ ନିବିଡ଼ ସମ୍ପର୍କ ରକ୍ଷା କରିବାକୁ ପଡ଼ିବ ।

ଅନିଚ୍ଛୁକ ପଦଦ୍ୱୟକୁ ଟାଣି ଟାଣି ସହରଆଡ଼େ ଆଗେଇ ଚାଲିଲା ଅରୁଣାଭ ।

ଅଦୂର ପାହାଡ଼ ଉପରେ ଜନସ୍ୱାସ୍ଥ୍ୟ ବିଭାଗର ଅଟ୍ଟାଳିକାମାନ ଦେଖାଯାଉଥିଲା ନିର୍ମେଘ ଆକାଶରେ ନକ୍ଷତ୍ରବକ ଭଳି ଆଉ ବିଦ୍ୟୁତ୍ ଉଦ୍‌ଭାସିତ ରାସ୍ତାଘାଟ ଅପେକ୍ଷମାଣ ଥିଲା ଠିକ୍ ଉତ୍‌କଣ୍ଠିତ ମାପୁଳା ଭଳି । ଅଭ୍ୟସ୍ତ ପାଦ ପୁରୁଣା ରାସ୍ତାରେ ମନ୍ଦ ଚାଲିଲା ମସ୍ତିଷ୍କର ଆବେଶାଚ୍ଛନ୍ନ ଅବସ୍ଥାପ୍ରାପ୍ତ ଭ୍ରୂକ୍ଷେପ ନକରି । ଅରୁଣାଭ ପୁଣି ଫେରି ଆସିଲା ତାର ସବୁଦିନିଆ ପରିବେଶକୁ ଯେଉଁଠି ଜୀବନ ଗତାନୁଗତିକତାର ନିଗଡ଼ ଚକାରେ ବୁଲିବାରେ ଅତ୍ୟନ୍ତ ଅଭ୍ୟସ୍ତ ହୋଇ ସାରିଥିଲା । ରାସ୍ତାରେ ଚାଲିଲାବେଳେ ସେ ମନେ ପକାଇଲା କାମ୍ୟୁଙ୍କ ଦି ମିଥ୍ ଅଫ୍ ସିସିଫସ୍ ( The myth of sysiphus ) ର କେତୋଟି ପଂକ୍ତି । ଏଭଳି ଗତାନୁଗତିକତାରେ ବିରକ୍ତ ମଣିଷ ହିଁ ଧୀରେ ସଚେତନ ହୋଇ ଉଠେ ଜୀବନର ଉଦ୍‌ଭ୍ରାନ୍ତତା ସମ୍ପର୍କରେ ଏବଂ ତା ପରେ ପରେ କାହିଁ ଶୂନ୍ୟଶୂନ୍ୟତା ଜୀବନ ତା ପକ୍ଷରେ ହୋଇ ଉଠେ ଶରଶଯ୍ୟା ଓ ଅଧିକ ଯନ୍ତ୍ରଣା ଦାୟକ ।



ଅଦୂରରେ ପାହାଡ଼ର ଆକାଶଚୁମ୍ବୀ ସବୁଜିମା । ବର୍ଷାଧାରର ମିଠା ମିଠା ଅତ୍ୟଡ଼ ଖାଇ ଉଲ୍ଲସି ଉଠୁଛି ଯୌବନବାନ୍ ପାହାଡ଼ ଗୁଡ଼ିକ ।

ନୀଳ ଆକାଶତଳେ ଲୋଭଣୀୟ ପ୍ରକୃତିର ମନ ଚହଲା ଶାଶ୍ୱତ ପ୍ରେମଲୀଳାର ଅକୁଣ୍ଠିତ ଅବାରିତ ଆତ୍ମପ୍ରକାଶ ବର୍ଣ୍ଣି ବସିଲାଛି ଝଂଜାବର୍ତ୍ତ ।

ରୂପ ବଦଳି ଯାଇଛି ନାଗାବଳୀର । ଉଚ୍ଛ୍ୱାସ ଓ ଆବେଗର ବଶବର୍ତ୍ତୀ ଦୁଇଟି ତନ୍ୱୀ ଭଳି ସେମାନେ ନାଚଉଛନ୍ତି 'ଧୂସର ରଙ୍ଗର ଶାଢ଼ୀ ବାନ୍ଧି ନେଇଛନ୍ତି । ପବନରେ ଭିଜା ମାଟିର ମନମତାଣିଆ ଗନ୍ଧ । ଅଦୂରରେ କଦଳୀ ବନର ବେଣୀକୁ ଟାଣି ଦେଉଛି ଚପଳ ପବନ । ବାପୁଗଡ଼ ସହରର ସବୁ କିଛି କାମ୍ୟ ଓ କମନୀୟ । ଅନୁଶାଭ ହଠାତ୍ ସଚେତନ ହୋଇ ଉଠିଲା ଯେ ତାର ଭାବନାର ପୃଥିବୀ କେବଳ ଜହ୍ନର ଆଲୋକ ପାର୍ଶ୍ୱ ପ୍ରତି ପକ୍ଷପାତିତ୍ୱ ଅବଲମ୍ବନ କରିଛି । ଜହ୍ନର ଅନ୍ଧକାର ପାର୍ଶ୍ୱଟି ତା ପକ୍ଷରେ ହୋଇ ଉଠିଛି ସମ୍ପୂର୍ଣ୍ଣ ଅସ୍ପୃଶ୍ୟ, ଅନାକାଂକ୍ଷିତ ।

ଅଦୂରରେ ଯେଉଁ ବୃକ୍ଷଘରଟି ଦେଖା ଯାଉଛି ତାର ଫାଳେ ପବନରେ ଉଡ଼ି ଯାଇଛି ।

ଦୁଃଖୀ ପରିବାରଟିର ପିଲାମାନେ ନିଶ୍ଚିତ ଭାବରେ ମା'ର ଚିରାଶାଢ଼ୀ ଯୋଡ଼ିହୋଇ ବର୍ଷା ଦାଉରୁ ନିଜ ନିଜକୁ ରକ୍ଷା କରୁଥିବେ !

କାତରା ନାରୀଟି ମୂଳତଃ ଅପେକ୍ଷା କରିଥିବ ମୂଲକଗି ଯାଇଥିବା ସ୍ୱାମୀର ଆଗମନ ପାଇଁ । ସବୁଦିନେ ହୁଏତ ଦୁହେଁ ମନେ ଭାବି ତାର ସ୍ୱାମୀ ଫେରି ଆସିବ ଆଉ ତାକୁ ପ୍ରଚଣ୍ଡ ଦୋହାରରେ ଅଭ୍ୟର୍ଥିତ କରିବ । ଉପାସରେ ତେଜହୀନ ହୋଇଥିବା ଚକ୍ଷୁ ଗୁଡ଼ିକରେ ସହାନୁଭୂତିର ଭିକ ମାଗି ତା ପିଲାମାନେ ତା ଆଡ଼କୁ ଅନାଇବେ ।

ଦୟନୀୟ ଜୀବନ !

କ୍ଷୁଧାର କଷାଘାତ କି ଭୟଙ୍କର ?

ଏଇ ରାୟଗଡ଼ ସହରରେ ଖାଲି ଯେଉଁ ଚରିତ୍ର ବ୍ୟକ୍ତିମାନେ ପଦାର୍ପଣ କରିଥିଲେ ରିକ୍ତ ହସ୍ତରେ, ଆଜି ସେମାନେ ଲକ୍ଷ୍ମୀଙ୍କ ବରପୁତ୍ର । ସେମାନଙ୍କ ନଭଃଚୁମ୍ବୀ କୋଠା ଗୁଡ଼ିକରେ କୁବେରପୁରୀର ଐଶ୍ୱର୍ଯ୍ୟ ଏବେ ଅଣ-ନଶ୍ୱାଚୀ ହୋଇ ହସୁଛି ।

ସେମାନେ ଉଭୟ ହାତରେ କେବଳ ସମ୍ପଦ ଗୋଟେଇଛନ୍ତି ଠିକ୍ ପ୍ରକାଣ୍ଡ ସର୍ପ ଅଧ୍ୟୁଷିତ ଉପତ୍ୟକାର ମଣିମୁକ୍ତା ସଂଗ୍ରାହକ ସିନ୍ଦବାଦ୍ ଭଳି । ଅମରବୃକ୍ଷ ଭଳି ରାୟଗଡ଼ ସହରରେ ମାଡ଼ି ଯାଇଛନ୍ତି ଏକ ପରଗଛୁ ଗୋଷ୍ଠୀ । ଭିନ୍ନ ଅଞ୍ଚଳର ଯାଯାବର ମାନଙ୍କୁ ରାୟଗଡ଼ ସ୍ୱାଗତ କରିଛି, ପୁଷ୍ଟ କରିଛି । ଆଜି ଧୀମାନ୍ତର ନୈକଟ୍ୟ କୋଟିପତିଙ୍କୁ ଦୀର୍ଘ ଜୀବନ ଦେଇଛି । ଧନୀ ସୌଦାଗର ମାନେ ହିଁ ରାୟଗଡ଼ର ଭାଗ୍ୟ ବିଧାତା । ଏମାନଙ୍କର ଫୋପଡ଼ା ଅର୍ଥକୁ ଅପ୍ତଳି ଦଲାଲମାନେ ନିର୍ବାଚନ ଲଢ଼ନ୍ତି ଓ ଜିତନ୍ତି । ଏମାନଙ୍କର ଦୌରାତ୍ମ୍ୟରେ ବନବାସୀର ଆର୍ଥନୈତିକ ଜୀବନରେ ଓହ୍ଲାଇ ଆସିଛି ପକ୍ଷାଘାତର ଅଭିଶାପ । ରାୟଗଡ଼ ସହରରେ ଦୁଇଟି ସମାଜ ରହିଛି ଦେହ ଘସାଘସି ହୋଇ । ଗୋଟିଏ ସମାଜ ଗଠିତ ବ୍ୟବସାୟୀ, ରାଜନୀତିଜ୍ଞ ଓ ଉଚ୍ଚ ପଦମାପ୍ରାପ୍ତ କିମ୍ବା ଦୁର୍ନୀତିଗ୍ରସ୍ତ ଚାକିରିଆଙ୍କୁ ନେଇ । ଏ ସମାଜରେ ଅର୍ଥ କିମ୍ବା କ୍ଷମତାର ମାପକାଠିରେ ଷ୍ଟାଟସ୍ ହୁଏ ନିରୂପିତ । ଏ ସମାଜରେ ସ୍ୱର୍ଣ୍ଣ ଏବଂ ବ୍ୟାଙ୍କ ବ୍ୟାଲେନ୍ସର ପରିମାଣ କ୍ରମ ବୃଦ୍ଧି ପଥରେ ଚଳିକରେ । ଏ ପାରାସାଇଟ୍ ସମାଜର ସାଂସ୍କୃତିକ ପୁଞ୍ଜି ଶୂନ୍ୟ ହେଲେ ବି ଏମାନେ ଦାବୀ କରନ୍ତି ଯେ ଏମାନେ ସହରର ଇଲିଟ୍ ।

ସହରର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ, ବଜାର, ହୋଟେଲ ମୁଖ୍ୟତଃ ଏହି ସମ୍ପ୍ରଦାୟ ପାଇଁ ଅଭିପ୍ରେତ । ଆଜି ଏହି ସମାଜରେ ଉପେକ୍ଷିତ ସହରର ସମସ୍ତ ଶ୍ରମଜୀବୀ ସମ୍ପ୍ରଦାୟ । ଏମାନଙ୍କର ଏକମାତ୍ର ପୁଞ୍ଜି ଶାରୀରିକ ଶକ୍ତି । ଅଶିକ୍ଷିତ ଆଦିବାସୀ, ହରିଜନ, ରିକ୍ସାବାଲା ନିମ୍ନଶ୍ରେଣୀ କର୍ମଚାରୀ ଏ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ।

ଦଳିତ ଶୋଷଣର ଶିକାର ଏହି ସମ୍ପ୍ରଦାୟଟି । ଖରା, ବର୍ଷାରୁ କିଛି ପରିମାଣରେ ଆଶ୍ରୟ ଦେଉଥିବା ଛୋଟ ଛୋଟ କୁଟୀର ଏମାନଙ୍କର ବାସସ୍ଥଳୀ । ଅରୁଣାଭ ଅନ୍ତର ଭରି ଭଲପାଏ ଏହି ବିଶେଷ ଗୋଷ୍ଠୀଟିକୁ । ଅନ୍ତହୀନ ଦାରିଦ୍ର୍ୟର ବାଲୁକାଶଯ୍ୟା ଭିତରେ ଅନ୍ତଃ ସଲିଳା ଫଲ୍‌ଗୁ ଭଳି ମାନବିକତାର ସ୍ରୋତ କେବଳ ଏହି ଶ୍ରେଣୀ ଭିତରେ ହିଁ ପ୍ରବାହିତ ହେଉଛି । ଲାଭ କ୍ଷତିର ହିସାବ ନେଇ ଏମାନଙ୍କ କାର୍ଯ୍ୟକଳାପ ସାଧାରଣତଃ ନିୟନ୍ତ୍ରିତ ହୁଏନା । ସୁବର୍ଣ୍ଣ କଙ୍କଣ ଦେଖାଇ ଲୋଭୀ ପଥିକକୁ ପ୍ରଲୋଭିତ କରିବା ଏହି ଶ୍ରେଣୀର ସ୍ୱାଭାବିକ ବୈଶିଷ୍ଟ୍ୟ ନୁହେଁ । ଏହି ଶ୍ରେଣୀର ଜୀବନରେ ଆଜି ବି ସବୁ ଅଛି । ଆଧୁନାକାଳର ଭାବନା ସେମାନଙ୍କୁ ବିବ୍ରତ କରେନା । ସ୍ୱାଧୀନତା ପରଠାରୁ ଦେଶର ମେରୁଦଣ୍ଡ ଏହି ଗୋଷ୍ଠୀ ଉପରେ କ୍ରମାଗତ ପ୍ରହାର କରି ଚାଲିଛି । ସତ୍ତାବଲ୍ଲଭର ଏହି ଅଗ୍ରଦୂତ ମାନଙ୍କୁ ଠକି ଓ ଅବହେଳା କରି ଦେଶର ଏଲିଟିଷ୍ଟ ସଜ୍ଜନ ସ୍ୱେଚ୍ଛାଚାରିତାର ଗହ୍ୱର ମଧ୍ୟରେ ଆତ୍ମହତ୍ୟା କରୁଛି । ଅରୁଣାଭ ଭାବନାର ସୂତ୍ର ଭିତରେ କେତେ ସମୟ ପାଇଁ ହଜି ଯାଇଥିଲା ।

ବାହାରେ ବର୍ଷାର ଉର୍ବଶୀ ନୃତ୍ୟ ଆହୁରି ବନ୍ଦ ହୋଇନାହିଁ । ଅରୁଣାଭ ଆବୃତ୍ତି କଲା ।

Still falls the Rain, At the feet of the starved man, hung upon the cross, Christ, that each day, each night, nails there.

ତଥାପି ବର୍ଷା ପଡ଼ୁଛି ଝରି, କ୍ରୁଶବିଦ୍ଧ ଉପବାସୀ ଲୋକର ପଦେ ; ପ୍ରତିଦିନ, ପ୍ରତିରାତି, ହସ୍ତପଦେ ଲୁହା କଣ୍ଟାମାରି ଯୀଶୁଖ୍ରୀଷ୍ଟ ଦେହେ ଦାଉ ସାଧେ ।

ପ୍ରତିଦିନ ତମେ କ୍ରସରୁ ଝୁଲୁଚି ଖ୍ରୀଷ୍ଟ, ପ୍ରତି ପ୍ରହରରେ ତମ ଦେହରୁ ଟୋପା ଟୋପା ରକ୍ତ ଝରି ପଡ଼ୁଚି ।

ଏ ପୃଥିବୀ କେବେ ପ୍ରସ୍ତୁତ ହେବ ଅନ୍ୟାୟ, ଅପମାନ, ନିର୍ଯ୍ୟାତନାର ଅବସାନ ପାଇଁ ?

ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଯେଉଁ ସୂର୍ଯ୍ୟଟି ଦିଗନ୍ତ ରେଖା ଉପରେ ଉଇଁ ଆସୁଥିଲା, ସେ ସୂର୍ଯ୍ୟ ଆଜି ମଧ୍ୟାହ୍ନରେ ।

ପୃଥିବୀରେ ଜ୍ଞାନର ଅଭାବ ନାହିଁ, କିନ୍ତୁ ଅଭାବ ରହିଯାଇଛି ହୃଦୟର ।

ତେଣୁ ଆରବ କାହାଣୀର ଜିନ୍‌ମାନଙ୍କ ଭଳି ବିଜ୍ଞାନ କେବଳ ସେବା କରି ଆସିଚି ଧନକୁବେର ମାନଙ୍କର ।

ଅରୁଣାଭ ବିଷାଦଗ୍ରସ୍ତ ହୋଇ ପଡ଼ିଲେ ।



'ଅରୁଣାଭ, ଏଥର ନାଟକୋତ୍ସବର ସମସ୍ତ ଦାୟିତ୍ୱ ମୁଁ ତମକୁ ଦବାକୁ ଚାହେଁ ।'

'ମୁଁ ପ୍ରସ୍ତୁତ ଅଛି ସାର ।'

ପ୍ରଶଂସିତ ଦୃଷ୍ଟିରେ ଅରୁଣାଭ ଆଡ଼କୁ ଚାହିଁ ରହିଲେ ପ୍ରିନ୍ସିପାଲ ଶ୍ରୀଯୁକ୍ତ ମହାପାତ୍ର ।

ବିଭିନ୍ନ ଜଞ୍ଜାଳ ମଧ୍ୟରେ ଶ୍ରୀ ମହାପାତ୍ର ହଜାଇ ଦେଇଛନ୍ତି ପଛଲଗା ବୟସର ଦିନ ଗୁଡ଼ିକୁ ।

ଅରୁଣାଭ ଭଳି ସେ ବି ଜଣେ ଆଦର୍ଶବାଦୀ ଥିଲେ ଏକ ସମୟରେ ।

ତାଙ୍କର ମନ ଆକାଶରେ ମଧ୍ୟ ଦିନେ ନୂଆ ନୂଆ ସ୍ୱପ୍ନ ଭାସି ଯାଉଥିଲା ଚଳ ବଉଦମାନଙ୍କ ଭଳି ।

ସେ ସ୍ତର ସେ ଅତିକ୍ରମି ଯାଇଛନ୍ତି ।

ସରକାରୀ ଚାକିରୀରେ ଥପ୍ପଡ଼ ଖାଇ ଖାଇ ସେ ବୁଝିଛନ୍ତି ମଣିଷ ଜୀବନ କେବଳ ସ୍ୱପ୍ନ ବା ଖିଆଲ ଆଦର୍ଶର ସମାହାର ନୁହେଁ ।

ଅରୁଣାଭକୁ ସେ ନିବିଡ଼ ଭାବରେ ଭଲ ପାଆନ୍ତି । ଅରୁଣାଭ ତାଙ୍କୁ ମନେପକାଇଦିଏ ଅତୀତର ସେଇ ଜ୍ୟୋତ୍ସ୍ନାସ୍ନାତ ଦିନ ଗୁଡ଼ିକ ସମ୍ପର୍କରେ ।

ଅରୁଣାଭ ଭଳି ସେ ମଧ୍ୟ ଦିନେ ସୂର୍ଯ୍ୟକିରଣ ଆଶାରେ ସିଧା ଆକାଶ ଆଡ଼େ ଉଡ଼ିବାକୁ ଇଚ୍ଛା କରୁଥିଲେ ।

ତାଙ୍କୁ ସେଭଳି ଲଢ଼ିବାକୁ ସୁଯୋଗ ଦିଆ ଗଲାନ ।

ସୁଯୋଗ ?

ସମ୍ଭବତଃ ଦୁର୍ବଳତା ତାଙ୍କ ଭିତରେ ଛପି ରହିଥିଲା, ଯାଫଳରେ ସେ ମନ୍ତ୍ରୀତ୍ୱ ରାସ୍ତାରେ ଯାଇ ପାରିଲେନ ।

ପଥର ଯେତେବେଳେ ଜଳ ସ୍ରୋତରେ ଗଡ଼ିକରେ, ସେ ନିଜର ବ୍ୟକ୍ତିତ୍ୱ ରକ୍ଷା କରିବାକୁ ଅପ୍ରାଣ ଚେଷ୍ଟାକରେ ।

ଧୀରେ ଧୀରେ ତାକୁ ଚିହ୍ନିତ କରୁଥିବା ଆଁ ଗୁଡ଼ିକ ନିଶ୍ଚିହ୍ନ ହୋଇଯାନ୍ତି ।

ତା ପରେ ସେ ହୁଏ ଚରିତ୍ରହୀନ ବ୍ୟକ୍ତିତ୍ୱ ବିହୀନ ଏକ ବାଲିଗରଡ଼ା । ଏଭଳି ଅସଂଖ୍ୟ ବାଲିଗରଡ଼ାଙ୍କୁ ନେଇ ଗଠିତ ହୋଇଛି ଭାରତର ବ୍ୟୁରୋକ୍ରାସି । ଜେଲଖାନାର ଦୁରନ୍ତ ଅପରାଧୀକୁ ଢାଇମ୍ କ୍ଷେତ୍ରରେ ପଥରେ ପକାଉଥିବା ମନ୍ତ୍ରୀ ଓ ଉପର ହାକିମଙ୍କର ଆଘାତରେ ଏକ ନିର୍ଦ୍ଦିଷ୍ଟ ଗ୍ରାଞ୍ଚରେ ଗଢ଼ା ହଜଚନ୍ଦ୍ର ବ୍ୟୁରୋକ୍ରାଟ୍‌ମାନେ ।

ଫଳରେ ଏକଦା ଶକ୍ତିମାନ ସ୍ୱାଧୀନଚେତା ବ୍ୟକ୍ତିଙ୍କ କେଶରେ ଶୁଣା ଯାଉଛି କେବଳ ମୋ-ସାହେବ ମାନଙ୍କର ମେଁ ମେଁ ।

ଅଧ୍ୟକ୍ଷ ମହାପାତ୍ର ଆଶ୍ଚର୍ଯ୍ୟ ହୁଅନ୍ତି ଅରୁଣାଭର କାର୍ଯ୍ୟକଳାପ ଦେଖି ।

ଅରୁଣାଭ ଏକ ଅଗ୍ନିକଣା ।

ସେ ଦିନ ସନ୍ଧ୍ୟାରେ ମନ୍ତ୍ରୀ ଫୋନ୍ କରି କହିଥିଲେ,—
'Can' you check that bloody lecturer Arunav ?'
ଏକ ପ୍ରକାଣ୍ଡ ଜନସଭାରେ ମନ୍ତ୍ରୀଙ୍କୁ ପ୍ରଚଣ୍ଡ ଆକ୍ରମଣ କରିଥିଲେ ଅରୁଣାଭ ।

ମନ୍ତ୍ରୀଙ୍କର କାମିନୀ ଏବଂ କାଞ୍ଚନ ପ୍ରୀତିକୁ ଜନସମକ୍ଷରେ ଉଲଙ୍ଗ କରି ଦେଇଥିଲେ ସେ ।

ଅରୁଣାଭଙ୍କୁ ଡାକି ସତର୍କ କରି ଦେଇଥିଲେ ଶ୍ରୀ ମହାପାତ୍ର । ବେପରୁଆ ସ୍ୱରରେ ଅରୁଣାଭ ଉତ୍ତର ଦେଇଥିଲେ,

'ମିଥ୍ୟାକୁ ମିଥ୍ୟାବୋଲି କହିବାର ସାହସ ମୁଁ ଯେଉଁଦିନ ହରାଇବି, ସେହିଦିନ ମୋର ପୃଥିବୀ ପୃଷ୍ଠର କାମ ସମାପ୍ତ ହୋଇଯିବ ସାର୍ ।'

'ତୁମେ ଭୁଲିଯାଉଚ ଅରୁଣାଭ ତମେ ଜଣେ ଚାକିରିଆ ।' 'ଜାଣେ । କେବଳ ମୋର ସ୍ୱାଧୀନତା ରକ୍ଷା କରିବାକୁ ମୁଁ ସରକାରୀ ଚାକିରିର ପ୍ରଲୋଭନ ତ୍ୟାଗ କରି ଏ କଲେଜରେ ଯୋଗ ଦେଇଛି ।

ଅରୁଣାଭ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର । ପ୍ରଗଲ୍ଭ ବକ୍ତା ଓ ସୁ ଲେଖକ ।

ମନ୍ତ୍ରୀଙ୍କଠାରୁ ପ୍ରେରଣା ପାଇ ଛାତ୍ରୟୁନିଅନ୍ ନେତାମାନେ ଅରୁଣାଭ ବିରୁଦ୍ଧରେ ଦରଖାସ୍ତ ଦେଇଥିଲେ ।

ସେମାନଙ୍କର ଦରଖାସ୍ତରେ ଲେଖାଥିଲା —

'ଅରୁଣାଭ ସାର୍ ମାର୍କସ, ଲେନିନ୍, ମାଓଜେଂଦୁ ଓ ଚେଗ୍ୟୁଆରଙ୍କ ଉଦ୍ଧୃତି ଦେଇ ଛାତ୍ରମାନଙ୍କୁ ସରକାର ବିଦ୍ରୋହୀ ହେବାକୁ ଉସକାଉଛନ୍ତି । ଓଡ଼ିଆ ତେଲଗୁ ସମ୍ପ୍ରଦାୟ ଭିତରେ ଭେଦଭାବ ସୃଷ୍ଟି କରୁଛନ୍ତି । ସହରର ଧନୀ, ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ନିରବଚ୍ଛିନ୍ନ ସମାଲୋଚନା କରୁଛନ୍ତି । ଆଦିବାସୀ ଲୋକଙ୍କ ଗାଁକୁ ଯାଇ ସେମାନଙ୍କୁ ବିପ୍ଳବ ପଥରେ ଚାଲିବା ପାଇଁ ଉତ୍ସାହିତ କରୁଛନ୍ତି । ଅରୁଣାଭ ସାର୍‌ଙ୍କ ରାଜନୀତି ଯୋଗୁଁ ଛାତ୍ର ସମାଜ ଭାଗ ଭାଗ ହୋଇ ଯାଇଛି ।'

ଛାତ୍ରନେତାଙ୍କ ନିନ୍ଦିତ କାର୍ଯ୍ୟକଳାପରେ ଅରୁଣାଭ ଥିଲା ପ୍ରବଳ ସମାଲୋଚକ । ଛାତ୍ର ୟୁନିୟନ୍‌ର ନେତାମାନଙ୍କୁ ସେ ମୁହେଁ ମୁହେଁ ଶୁଣାଇ ଦେଇଥିଲା, ' ତମେମାନେ ୟୁନିୟନ୍ ଫଣ୍ଡର ଅସତ୍ ବ୍ୟବହାର କରିଚ । ମଦଖାଇ ମନ୍ତ୍ରୀର ସ୍ତୁତିଗାନ କରିବାଛଡ଼ା ତମେ କଲେଜଛାତ୍ରଙ୍କ ପାଇଁ କିଛି କାମ କରିନ । ତମେମାନେ ଏ ଦେଶର କଳଙ୍କ' । ଅରୁଣାଭ ବିରୁଦ୍ଧରେ ସେମାନଙ୍କର ଅଭିଯୋଗ ଥିଲା ଅସଂଖ୍ୟ ।

ସେଦିନ ମହାବିଦ୍ୟାଳୟର ଛାତ୍ରୟୁନିୟନ୍ ଉଦ୍‌ଘାଟନ ଉତ୍ସବରେ ପ୍ରଧାନ ନାୟକ ମନ୍ତ୍ରୀ କହିଥିଲେ, ' ଏ ମହାବିଦ୍ୟାଳୟରେ ରାଜନୀତି

କରୁଥିବା ଅଧ୍ୟାପକ ରହିଛନ୍ତି । ମୁଁ ସେମାନଙ୍କୁ କାପୁରୁଷ କହିବି, କାରଣ ମିଥ୍ୟା ରାଜନୀତି କ୍ଷେତ୍ରକୁ ବରଣ କରି ନେବାର ସାହାସ ସେମାନଙ୍କର ନାହିଁ ।'

'ରାଜନୀତି' ଅରୁଣାଭର ଅପରାଜେୟ କଣ୍ଠର ଶବ୍ଦମାନେ ଏକ ଜନସମୁଦ୍ରରେ ଶିହରଣ ଜାତ କରୁଥିଲେ, 'ଆମର ଭୋଟ ବଳରେ ଗାଦି ପାଇଥିବା ଯେଉଁ ରାଜନୀତିଜ୍ଞମାନେ କ୍ଷମତାର ଦୁରୁପଯୋଗ କରି ଏ ଦେଶକୁ ଧ୍ୱଂସ କରୁଛନ୍ତି, ସେମାନେ ଭୁଲିଯାଉଛନ୍ତି ଯେ ସେମାନଙ୍କୁ ସମାଲୋଚନା କରିବାର ମୌଳିକ ରାଜନୈତିକ ଅଧିକାର ପ୍ରତ୍ୟେକ ନାଗରିକକୁ ସମ୍ବିଧାନ ଦେଇଛି ।'

ଅରୁଣାଭବିରୋଧୀ ଗୋଷ୍ଠୀର ଲକ୍ଷରେ ଲମ୍ବ ଝଡ଼କୁ ଡାକି ବଢ଼ି ଗଲାଣି । ଶିଳ୍ପପତି, ବ୍ୟବସାୟୀ ବିଭିନ୍ନ ରାଜନୈତିକ ଦଳ, ଦଲାଲଗିରି ଓ ଦାଦାଗିରି କରୁଥିବା ଛାତ୍ରନେତା ସମସ୍ତେ ଅରୁଣାଭକୁ ସମାଲୋଚନାର ଶରବ୍ୟ କରିଛନ୍ତି, ତଥାପି ଅରୁଣାଭ ବିଚଳିତ ହୋଇନି, କିମ୍ବା ପ୍ରଲୋଭନର ଅର୍ଗଳ ଭିତରେ ବେଳ ପୂରାଇ ଦେଇନି ।

ପ୍ରିନ୍ସିପାଲ ଶ୍ରୀ ମହାପାତ୍ର ମନେ ମନେ କହୁଛନ୍ତି, 'ତମେ ରଜ୍ ଶାଳଗଛଭଳି ଅନମନୀୟ ରହ ଅରୁଣାଭ । ତମରି ଭିତରେ ଏ ଦେଶର ଆତ୍ମା ଆତ୍ମପ୍ରକାଶ କରୁ । ମୋର ସାଧ୍ୟମତେ ମୁଁ ତମ ଉପରେ ସୁରକ୍ଷାର ଛତ୍ର ଟେକି ଧରିବି ।

ନାଟକୋତ୍ସବ ପ୍ରସ୍ତୁତି ପାଇଁ ସରଗରମ ହୋଇ ଉଠିଛି କଲେଜ ବାତାବରଣ ।

ଆନ୍ତଃଶ୍ରେଣୀ ପ୍ରତିଯୋଗିତା ଉତ୍ସବର ବାୟୁମଣ୍ଡଳ ସୃଷ୍ଟି ହୋଇଛି ମହାବିଦ୍ୟାଳୟରେ । ପ୍ରତ୍ୟେକ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ପରିଲକ୍ଷିତ ହେଉଛି ପ୍ରବଳ ଉନ୍ମାଦନା । ଦଳେ ତରୁଣ ଅଧ୍ୟାପକଙ୍କସହ ଅରୁଣାଭ ଦିନରାତି ପରିଶ୍ରମ କରୁଛି । ଦୁଇଟି ପାଣ୍ଡୁଲିପି ଏବଂ ଦୁଇଟି ଛପାବହି ନିର୍ବାଚିତ ହେଲାପରେ ଅନବରତ ରିହର୍ସାଲ୍ ଚାଲିଛି ଅଭିନେତା ଓ ଅଭିନେତ୍ରୀମାନଙ୍କୁ ନେଇ ।

ଡ୍ରାମାଟିକ୍ ସମିତି ନିଷ୍ପତ୍ତି ନେଇଥିଲା ପ୍ରଥମେ ଓଡ଼ିଆ ନାଟକ ଓ ତା ପରେ ତେଲୁଗୁ ନାଟକ ଅଭିନୀତ ହେବ ।

ହଠାତ୍ ଅଶାନ୍ତ ହୋଇ ଉଠିଲା ମହାବିଦ୍ୟାଳୟର ବାତାବରଣ । ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଦଳେ ତେଲୁଗୁ ଛାତ୍ର ଜିଦ୍ ଧରି ବସିଲେ ପ୍ରଥମେ ତେଲୁଗୁ ନାଟକ ମଞ୍ଚସ୍ଥ କରିବା ପାଇଁ । ସେମାନଙ୍କର ଏ ଦାବୀକୁ ବିରୋଧ କରିବାକୁ ଲାଗିଲେ ଓଡ଼ିଆ ଛାତ୍ରମାନେ ।

ଅରୁଣାଭ ବିଚଳିତ ହୋଇ ଉଠିଲା । ସେ ତେଲୁଗୁ ଛାତ୍ର ନେତାମାନଙ୍କୁ ଆମନ୍ତ୍ରଣ କରି ସେମାନଙ୍କୁ ବୁଝାଇବାକୁ ଚେଷ୍ଟାକଲା ।

ଅରୁଣାଭ ଓ ଅନ୍ୟ ଦୁଇଜଣ ଅଧ୍ୟାପକ ତଥା ପାଞ୍ଚଜଣ ଛାତ୍ରନେତାଙ୍କୁ ନେଇ ଇଂରାଜୀରେ ଆଲୋଚନା ଚାଲିଲା ନାଟକୋତ୍ସବ ସମ୍ପର୍କରେ ।

ତମେମାନେ କ'ଣ ଆନ୍ଧ୍ରରୁ ଆସିଛ? ପ୍ରଶ୍ନକଲା ଅରୁଣାଭ ।'ନାସାର୍ ।', ଆମେ ରାୟଗଡ଼ାର ବାସିନ୍ଦା.ଛାତ୍ରନେତା ରାଘବ ରାଓ ଉତ୍ତରଦେଲା ।

'ଦେଖ ରାଘବ । ଓଡ଼ିଶାର ବାସିନ୍ଦାଭାବରେ ତମର ଓଡ଼ିଆଭାଷା ପ୍ରତି ସମ୍ମାନ ଓ ଶ୍ରଦ୍ଧାବୋଧ ରହିବା ଦରକାର ।'

'ତେଲୁଗୁ ଆମର ମାତୃଭାଷା ସାର୍ !'

'ମାତୃଭାଷାପ୍ରତି ତମର ଆଦର ରହିଚି ଶୁଣି ମୁଁ ଖୁସିହେଲି । ଏଭଳି ଆଗ୍ରହ ତମର ଶକ୍ତିଶାଳୀ ବ୍ୟକ୍ତିତ୍ୱର ପରିଚାୟକ ନିଶ୍ଚୟ । ......ଅଚ୍ଛା, ତମେ ଓଡ଼ିଶାରେ କେତେବର୍ଷ ହେଲା ରହିଚ ?'

' ମୋଇଜନ୍ମ ରାୟଗଡ଼ାରେ ।'

'ଓଡ଼ିଶାର ପାଣି ପବନରେ ତମେ ମଣିଷ । ଓଡ଼ିଶା ମା'ର କ୍ଷୀର ଖାଇ ତମେ ସମର୍ଥ ବ୍ୟକ୍ତିତ୍ୱର ଅଧିକାରୀ । ତେଣୁ ତମ ମାତୃଭାଷା ପ୍ରତି ଯେତିକି ଶ୍ରଦ୍ଧା ରହିଛି, ଓଡ଼ିଆ ଭାଷାପ୍ରତି ମଧ୍ୟ ସେତିକି ଶ୍ରଦ୍ଧା ରହିବା ଦରକାର ।'

'ମୁଁ ଓଡ଼ିଶାକୁ ବିରୋଧ କରୁନି ସାର୍ ।'

'ତମେ ଓଡ଼ିଆରେ କଥାବାର୍ତ୍ତା କରି ପାରୁଚ ?'

' ନା ସାର୍ ।'

'ମୁଁ ଶୁଣୁଚି ତମେ କେତେ ପୁରୁଷ ହେଲା ଓଡ଼ିଶାରେ ରହିଲଣି, ଅଥଚ ତମେ ଓଡ଼ିଆ ଶିଖିବାର ଆବଶ୍ୟକତା ଅନୁଭବ କରି ପାରିଲନ ।'

ଜଣେ ଛାତ୍ର ହଠାତ୍ ତେଲୁଗୁରେ କହି ଉଠିଲା, 'ଆମେ ଓଡ଼ିଆ ନୋହୁ । ଆମେ ତେଲୁଗୁ । ତେଲୁଗୁଭାଷା ଏକ ମହାନ୍ ଭାଷା' ।

'ତେଲୁଗୁଭାଷା ନିଶ୍ଚିତ ଭବେର ଏକ ମହାନ ଭାଷା । କେବଳ ତେଲୁଗୁ କାହିଁକି ମଣିଷର ଭାବପ୍ରକାଶର ମାଧ୍ୟମ ସବୁ ଭାଷା ମହାନ୍, କାରଣ ମଣିଷରେ ଦୟ ଭାବ, ପ୍ରଣୟ ମମତା ସବୁ କେବଳ ଭାଷାର ଦରଜା ଦେଇ ହିଁ ମସ୍ତିଷ୍କର ରୁଦ୍ଧ କୋଠରୀ ତ୍ୟାଗ କରିଥାଏ ।'

'ତେବେ ତେଲୁଗୁ ଭାଷାକୁ ଏ ନାଟକୋତ୍ସବରେ ଅଗ୍ରାଧିକାର ଦିଆଯିବନି କାହିଁକି ?'

ପ୍ରଣ ନୃଭାବରେ ଅରୁଣାଭ ଉତ୍ତର ଦେଲା ।'

'ଭାରତ ବର୍ଷରେ ବହୁଭାଷା । ପ୍ରତ୍ୟେକ ଭାଷାର ପ୍ରାଧାନ୍ୟ ପାଇଁ ସ୍ୱୀକୃତ ହୋଇଛି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡ । ଆନ୍ଧ୍ରରେ ତେଲୁଗୁ, ବେଙ୍ଗାଲ୍‌ରେ ବଙ୍ଗଳା, ବିହାରରେ ହିନ୍ଦୀ ଏବଂ ଓଡ଼ିଶାରେ ଓଡ଼ିଆ ପ୍ରଥମ ସ୍ଥାନର ଅଧିକାରୀ ହେବ ନିଶ୍ଚୟ । ଅବଶ୍ୟ ଛାତ୍ରମାନଙ୍କର ପରସ୍ପର ବୁଝାମଣାରେ ଯଦି ତେଲୁଗୁ ନାଟକକୁ ପ୍ରଥମେ ଅଭିନୀତ ହେବାକୁ ସୁଯୋଗ ମିଳେ, ତେବେ ମୁଁ ଖୁସିହେବି '।

'ଓଡ଼ିଆ ଛାତ୍ରମାନେ ଆମକୁ ବିରୋଧ କରୁଛନ୍ତି ସାର୍,' କଲେଜର ବାତାବରଣ ଅଶାନ୍ତ ହୋଇ ଉଠିଛି । ମୁଁ ଅନୁରୋଧ କରୁଛି ତମେ ଅନର୍ଥକ ଜିଦ୍‌ର ବଶବର୍ତ୍ତୀ ହୋଇ ନାଟକୋତ୍ସବରେ ଅଚଳ ଅବସ୍ଥା ସୃଷ୍ଟି କରନାହିଁ ।

ରକ୍ତ ଦେଇ ପରାଧୀନ ଭାରତର ବୀର ପୁତ୍ରମାନେ ଜାତୀୟ ଏକତାର ଯେଉଁ ମହଲ ତିଆରି କରିଥିଲେ; ଧୀରେ ଧୀରେ ତାର

ପତନରୁ ଖଣ୍ଡ ଖଣ୍ଡ ପଥର ଖସଉଚାଲ୍ଧ ସ୍ୱାଧୀନ ଭାରତର ଶାସକମାନେ। ବିଂଶ ଶତାବ୍ଦୀର ଅଶୀ ଦଶକରେ ରାଜନୀତି ବଜ୍ରଦଘେରା ଆକାଶରେ ନ୍ୟାସ୍ତ ହୋଇଯାଇଛି ଏକ ଧରଣର ଷ୍ଟେସିସ୍ ର ସୁନ୍ଦର ବିହଙ୍ଗଟିଏ ଭଳି। ଆଜିର ଭାରତରେ ଉତ୍ତରାଞ୍ଚଳ ରାଜ୍ୟମାନଙ୍କର ସ୍ୱଚ୍ଛ ରୂପ ପଡ଼ି ଯାଇଛି ବଙ୍ଗ, ବିହାର, ଆନ୍ଧ୍ର ବାସୀଙ୍କର କବଳରେ। ସତ୍ୟବାଦୀର ତେଜସ୍ୱାନ ପୁରୁଷମାନଙ୍କ ବିଦାୟ ପରେ ଓଡ଼ିଶାର ସୌଭାଗ୍ୟ ପ୍ରଦୀପ ଲୁଚି ଯାଇଛି ଗହନ ତମିସ୍ରର ସୁଡ଼ଙ୍ଗରେ। ଏ ଦେଶ ସ୍ୱାଧୀନତାର ଜନ୍ମଦାତା ବାପୁଜୀ ବିଭିନ୍ନ ପ୍ରଦେଶର ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ସମ୍ପର୍କରେ ମନ୍ତବ୍ୟ ଦେଇଥିଲେ, If I bring Gujarati manners in to Bengal, I would expeet the Bengalis to expel me.

ମୁଁ ଯଦି ଗୁଜରାଟି ଚଳଣୀ ବଙ୍ଗଳାକୁ ଆମଦାନୀ କରେ, ମୋର ଧାରଣା ବଙ୍ଗାଳୀମାନେ ମତେ ବଙ୍ଗଳାରୁ ତଡ଼ିଦେବେ।

ଭାରତର କୌଣସି ପ୍ରଦେଶର ଭାଷା ବା ସଂସ୍କୃତି ଅନ୍ୟ କୌଣସି ଶକ୍ତିଶାଳୀ ପଡ଼ୋଶୀ ପ୍ରଦେଶରେ ସଂସ୍କୃତି ବା ଭାଷାଦ୍ୱାରା ଆଚ୍ଛନ୍ନ ହେବା ଏକ ଅବାଂଛିତ ବ୍ୟାପାର। ଭାଷା କିମ୍ବା ଧର୍ମକୁ କେନ୍ଦ୍ରକରି ଚିନ୍ତାକରିବା ଅରୁଣାଭ ଲଜ୍ଜାଜନକ ମନେ କରୁଥିଲା। ଅତଳସ୍ପର୍ଶୀ ଶୋଷଣ ମଧ୍ୟରେ ତିଳେ ତିଳେ ପିଷ୍ଟ ହେଉଥିବା ଅଗଣିତ ସର୍ବହରାର ଏକତାକୁ ଦିଗ୍ଭ୍ରାନ୍ତ କରିବାପାଇଁ ଧର୍ମ, ଭାଷା ବା ଜାତିର ସ୍ଲୋଗାନ ଯେ ଶୋଷକ ଶ୍ରେଣୀର ଏଜେଣ୍ଟ ମାନଙ୍କର ଏକ ବ୍ରହ୍ମାସ୍ତ୍ର, ଏହା ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲା।

ଆନ୍ଧ୍ର ଭାଷୀଙ୍କ ପ୍ରତି ପ୍ରଚୁର ସମ୍ମାନ ଥିଲା ଅରୁଣାଭର। ଏକଦା ନବଗଠିତ ଜଙ୍ଗଲଭରା ରାଜ୍ୟରେ କୃଷି ଓ ଶିଳ୍ପର ମଶାଲ ଧରି ଯେଉଁ ବୁଦ୍ଧିମାନ ଓ ଶ୍ରମପରାୟଣ ବ୍ୟକ୍ତିମାନେ ପ୍ରବେଶ କରିଥିଲେ, ସେମାନଙ୍କୁ ଅବଜ୍ଞାର ଚକ୍ଷୁରେ ଦେଖିବା ଅରୁଣାଭ ପକ୍ଷରେ ସମ୍ଭବ ନଥିଲା।

ଶ୍ରମଜୀବୀର ବିନ୍ଦୁ ବିନ୍ଦୁ ରକ୍ତକ୍ଷରଣ ଫଳରେ ଶୈଳ୍ପିକ ସଭ୍ୟତାର ବିଶାଳ ଚତ୍ୱର ଘର୍ଷଣ-ହୀନ ସ୍ୱର୍ଣ୍ଣିମ ପୁଞ୍ଜିବାଦୀ ଇତିହାସର ଏକ ସୁପରିଚିତ ଅଧ୍ୟାୟ।

ଅର୍ଦ୍ଧ ଶତାବ୍ଦୀ ତଳେ ଯେଉଁ ଶକ୍ତିମାନ ଆନ୍ଧ୍ରବାସୀମାନେ ରାୟଗଡ଼ର ବଜାରରେ ଶିଳ୍ପାଲୋକ ଝଲସାଇ ଥିଲେ, ସେମାନଙ୍କର ଇସ୍ପାତ ଆଦତରେ ଲୁଚି ହୋଇଗଲା ଅସଂଖ୍ୟ ବନବାସୀ ପରିବାରର ମୌନ, ବେଦନାଭରା ଜୀବନ ।

ରାୟଗଡ଼ର ପ୍ରଚୁର ଭୂସମ୍ପତ୍ତି କୃଷୀଗତ କଲା ପରେ ମଧ୍ୟ ସେମାନେ ରହିଗଲେ ଏ ମାଟିରେ ଆଗନ୍ତୁକ । ପ୍ରତିଭା ଓ ଅର୍ଥର ବ୍ୟବହାର କରି ଓଡ଼ିଶାର ରାଜନୈତିକ ରଙ୍ଗମଞ୍ଚରେ ସଫଳ ନାୟକ ହେବା ସତ୍ତ୍ୱେ ବି ସେମାନେ ରହିଗଲେ ମନ ଓ ପ୍ରାଣରେ ଆନ୍ଧ୍ରବାସୀ । ଏକଦା ଶାଗ ମାଛ ମୂଲ୍ୟରେ ଆଦିବାସୀଙ୍କ ଠାରୁ ଲାଭ କରିଥିବା ପ୍ରଚୁର ଭୂସମ୍ପତ୍ତି ଓ ସୁଦୃଶ୍ୟ ମହାର୍ଘ ପ୍ରାସାଦଗୁଡ଼ିକୁ ବିକ୍ରୟକରି କୋଟି କୋଟି ଟଙ୍କାସହ ଓଡ଼ିଶାରୁ ବିଦାୟ ନେଇଛନ୍ତି ସେମାନେ ।

କଟକ କିମ୍ବା ଭୁବନେଶ୍ୱରରୁ ଆଗତ କ୍ଳାନ୍ତ ବସ୍ ଯେତେବେଳେ ରାୟଗଡ଼ର ଉପକଣ୍ଠରେ ସ୍ଥାପିତ ପେଟ୍ରୋଲ ପମ୍ପଠାରେ ବିଶ୍ରାମ ନିଏ, ବସ୍‌ରୁ ବହିରାଗତ ଯାତ୍ରୀର ଚକ୍ଷୁ ନିବଦ୍ଧ ହୁଏ, ଓଡ଼ିଶାର ଭୂତପୂର୍ବ ମନ୍ତ୍ରୀ ରାମଶେଷାୟାଙ୍କ ସୁରମ୍ୟ ଅଟ୍ଟାଳିକା ଓ ତାର ସମ୍ମୁଖସ୍ଥ ଉଦ୍ୟାନ ଉପରେ ।

ନୂତନ ମାଟି ସନ୍ଧାନେ ବିହଙ୍ଗଭଳି ଆଜି ରାମଶେଷାୟାଙ୍କ ଦାୟାଦମାନେ ରାୟଗଡ଼ରୁ ବିଦାୟ ନେଇ ସାରିଛନ୍ତି ।

୧୯୩୫ରେ ରାୟଗଡ଼ରେ ଯେତେବେଳେ ଚିନିକଳ ସ୍ଥାପିତ ହେଲା, କୁଶଳୀ ଇଂଜିନିୟର ସୁବ୍ବାରାଓ ଏକ ନିର୍ଜନ ସ୍ଥାନରେ ନିର୍ମାଣ କଲେ ତାଙ୍କ ସୁଦୃଶ୍ୟ ପ୍ରାସାଦ । ଏ ପ୍ରାସାଦ ଚତୁର୍ଦ୍ଦିଗରେ ଶହ ଶହ ଏକର ଜମି ନେଇ ଗଢି ଉଠିଲା ତାଙ୍କର କୃଷିଫାର୍ମ । ବର୍ତ୍ତମାନ ରାୟଗଡ଼ ସହରର ହୃତ୍‌ପିଣ୍ଡରେ ରହିଥିବା ସୁବ୍ବାରାଓଙ୍କ ଫାର୍ମର ଜମି ଗୁଡ଼ିକ ଧୀରେ ଧୀରେ ବିକ୍ରୟ ହୋଇ ପ୍ରଚୁର ଅର୍ଥ ଜମାହେଲା ଆନ୍ଧ୍ରର ବିଭିନ୍ନ ବ୍ୟାଙ୍କରେ ।

ଓଡ଼ିଶାର ଭାଷା କିମ୍ବା ସଂସ୍କୃତି ସହ କୌଣସି ସମ୍ପର୍କ ରଖି ନଥିବା ସୁବାଦାରଙ୍କ ଦାୟାଦମାନେ ଆନ୍ଧ୍ରକୁ ଫୁଲ୍‌କନା ଉଡ଼ି ଯିବାର ସ୍ୱପ୍ନ ଦେଖୁଛନ୍ତି ଗତ ଏକ ଦଶନ୍ଧି ଧରି । ଗମନାଗମନର ସୁଲଭତା ଓ ଆନ୍ଧ୍ର ସଂସ୍କୃତିର ଅକ୍ଷୁଣ୍ଣ ଶକ୍ତି ଫଳରେ ବହୁଳ ସଂଖ୍ୟକ ଚାକିରି ପ୍ରାର୍ଥୀ ଆକୃଷ୍ଟ ହୋଇଛନ୍ତି ବସୁଗଡ଼ ପ୍ରତି । ବସୁଗଡ଼ର ବହୁ ଚର୍ଚ୍ଚିତ ଚାକିରିରେ ଓଡ଼ିଆ କର୍ମଚାରୀଙ୍କ ସଂଖ୍ୟା ଶତକଡ଼ା ଶୂନ୍ ।

ବସୁଗଡ଼ରେ ସ୍ଥାନୀୟ ଓଡ଼ିଆ ଓ ଆଦିବାସୀ ନେତାଙ୍କ ମଧ୍ୟରେ ଯେଉଁ ମୁଷ୍ଟିମେୟ ବ୍ୟକ୍ତି 'ଓଡ଼ିଆଇଜ୍ମ' ଓ 'ଆଦିବାସୀଇଜ୍ମ' କୁ ପୁଞ୍ଜିକରି ରାଜନୀତିର ଅଙ୍ଗନରେ ମନୋଚଳ ସୃଷ୍ଟି କରିଛନ୍ତି, ଶକ୍ତି ଅର୍ଥ ଓ କ୍ଷମତା-ଲିପ୍‌ସା ସେମାନଙ୍କୁ ଓଡ଼ିଆର ସ୍ୱାର୍ଥପ୍ରତି ମିର୍‌ଜାଫର୍‌ର ଦୃଷ୍ଟିକୋଣ ଦେଇଛି ।

ଅରୁଣାଭ ନମ୍ରସ୍ୱରରେ ଆବେଦନ ଜଣାଇଛି, 'ଆପଣମାନେ ନିଜ ମାତୃଭାଷା ତେଲୁଗୁ ସହିତ ଓଡ଼ିଆକୁ ମଧ୍ୟ ନିଜର ଭାଷାରୂପେ ଗ୍ରହଣ କରି ନିଅନ୍ତୁ ।'

ଧୀରେ ଧୀରେ ଏକ ଚାପା ଗୁଞ୍ଜନ ବସୁଗଡ଼ର ସହର, ବଜାର, ଅଫିସ ସବୁଠି ତାର କାୟା ବିସ୍ତାର କରିଛି, 'ଅରୁଣାଭ ଏକ ଅବାଂଛିତ ବ୍ୟକ୍ତି । ଅଧ୍ୟାପନାର ପରିସର ଲଙ୍ଘନ କରି ସେ ଓଡ଼ିଆ ଭାଷା ଓ ସଂସ୍କୃତିର ଚାରଣ ସାଜିବାର ଅକ୍ଷମଣୀୟ ଅପରାଧ କରିଛି । ତାକୁ ସଜାଡ଼ି ଦିଆଯିବ ।'

ଅରୁଣାଭର ବନ୍ଧୁମାନେ ଆତଙ୍କିତ ହୋଇ କହିଛନ୍ତି, 'ତମେ ରାତ୍ରୀରେ ବାହାରକୁ ବାହାରିବନି ଅରୁଣାଭ । ତମ ବିରୁଦ୍ଧରେ ଷଡ଼ଯନ୍ତ୍ରର କୁହେଳି ଘନୀଭୂତ ହୋଇ ସାରିଲାଣି ।'

ଅରୁଣାଭ ହସିଲା ।

ଭାରତର ମୁକ୍ତିଦାତା କହିଥିଲେ 'ଭୟ କରନାହିଁ । ଯେ ଭୟାର୍ତ୍ତ, ସେ ସତ୍ୟର ସାଧକ ହୋଇ ପାରିବନି ।'

ସ୍ୱାଧୀନତାପରର ରକ୍ତସ୍ନାତ ଦିନଗୁଡ଼ିକରେ ହିଂସାରେ ମାତି ମଣିଷର ଅନ୍ତଃକରଣରେ ପ୍ରେମର ଫୁଲ ଫୁଟାଇବାକୁ ଉଦ୍ୟମକରି ଦିଲ୍ଲୀର ମାଟିରେ ଅକାଳରେ ଜୀବନ ହାରି ଚାଲିଗଲେ ସେ ।

ଅନେକ ଦିନର ଦୀର୍ଘ ଭାରତରେ ମନ୍ତ୍ରୀପାଳିତ ଯୁବକାନ୍ଦୋଳନ ପକ୍ଷରୁ ବାରମ୍ବାର ଚଣ୍ଡହୁଙ୍କାର ଶୁଣାଯାଉଛି ଭିନ୍ନମତର ସ୍ୱରକୁ ନିଃଶେଷ କରିଦେବା ପାଇଁ ।

ଅରୁଣାଭର ମୃତ ପଥରେ ଦଣ୍ଡାୟମାନ ହେଲା ଏକ ବଦାନ୍ୟ ଦିନର ଅଭିନ୍ନ ଘଟଣାଟିଏ ।

ଖୋଲା ମୈଦାନରେ ସ୍ଥାନୀୟ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ଦୁର୍ନୀତିକୁ ଜନସାଧାରଣଙ୍କ ସମକ୍ଷରେ ଉଲଙ୍ଗ କରି ଅରୁଣାଭ ଯେଉଁ ଅକ୍ଷମଣୀୟ ଅପରାଧ କରିଥିଲା, ସେଥିରେ ବିଚଳିତ ହୋଇ ଉଠିଥିଲେ ଶାସକ ଦଳର ପୋଷା ସଙ୍ଗୀନ ବନ୍ଦୁକଧାରୀ ଯୁବକମାନେ ।

ପରେ ଗୋଟିଏ ସଭାଠାରେ ଅରୁଣାଭକୁ ଘେରାଉକରି ସେମାନେ କହିଥିଲେ, 'ସାବଧାନ ଅଧ୍ୟାପକ ଅରୁଣାଭ ! ତମଭଳି ଯେଉଁ ବହିରାଗତମାନେ ଏ ମାଟିର ପ୍ରତିଷ୍ଠିତ ସନ୍ତାନମାନଙ୍କୁ ସମାଲୋଚନା କରୁଛନ୍ତି, ସେମାନଙ୍କ ପାଇଁ ସ୍ଥାନ ଗଣ୍ଡରେ ନାହିଁ ।'

ପ୍ରବଳ ଅଟ୍ଟହାସରେ ଫାଟିପଡ଼ି ଅରୁଣାଭ ସେମାନଙ୍କୁ ଉତ୍ତର ଦେଇଥିଲା, 'ତମେ କାହାକୁ ମାଟିର ସନ୍ତାନ, କହୁଛ ଯୁବ ବନ୍ଧୁଗଣ ? ମାଟିରେ ଯେତେଦିନ ରହିଲେ ମଧ୍ୟ ପାରାସାଇଟ୍ କଣ କେବେ ଭୂମିପୁତ୍ରର ଦାବୀ କରିପାରେ ?'

ଉତ୍କଟ ଅର୍ଥଲାଳସାଯୁକ୍ତ ରାଜନୈତିକ ସଂସ୍ଥାଗୁଡ଼ିକରେ ସଲସଲ ହେଉଛନ୍ତି ପାରାଲିସିସ୍‌ର ଅସଂଖ୍ୟ ଜୀବାଣୁ ।

ରେଡ଼ିଓ, ଖବରକାଗଜ ଘୋଷଣା କରୁଛି ମୁଖ୍ୟଶାସକଙ୍କର ବସୁନ୍ଧରାପୂରନ ବକ୍ତୃତାକୁ ।

'ଆସ ପାପୀ ତାପୀ କ୍ଷୁଧା ତୃଷା ପ୍ରପୀଡ଼ିତ ଦେଶର ଜନତାଗଣ ! ମୋ ପତାକା ତଳେ ସମବେତ ହୁଅ । ଏ ଦେଶକୁ ଭୂପୃଷ୍ଠରେ ଶ୍ରେଷ୍ଠଦେଶ

ଘୋଷଣା କରିବାର ମନ୍ତ୍ର କେବଳ ମୁଁ ଜାଣିଛି । ଯେଉଁମାନେ ଅବିଶ୍ୱାସ କରିବେ ସେମାନଙ୍କୁ ସଂହାର କରିବାର ଦୈବ କର୍ତ୍ତବ୍ୟ ମୁଁ ହସ୍ତକୁ ନେଇଛି । ପୋଲିସ, ସି. ଆର. ପି, ମିଲିଟାରି, ନବାପଣ୍ଣ ଆଇନ୍ ଓ ଆତଙ୍କବାଦ-ବିରୋଧ ଆଇନ, ଭାରତରକ୍ଷା ଅର୍ଡ଼ିନାନ୍ସ ସବୁକିଛି ଅସ୍ତ୍ର ମୋ ତୂଣୀରରେ ଝକ୍ ଝକ୍ କରୁଛି ।

ଦେଶର କୋଣେ କୋଣେ ମାତି ଯାଉଚନ୍ତି ଭୟର ଗୋଳଆମୁହାଁ ଜୀବାଣୁ ଗୁଡ଼ିଏ ।

ତମେ ବ୍ୟବସାୟୀ ? ସାବଧାନ ! ଟାକ୍ସ ଆଦାୟ ବିଭାଗ ଓ ଖାଦ୍ୟ ଅପମିଶ୍ରଣ ବିଭାଗ କବଳରୁ ତମେ ଉଦ୍ଧାର ପାଇ ପାରିବନି । ଆସ, ଏଇ ପତାକା ତଳକୁ ଆସ !

ତମେ କର୍ମଚାରୀ ? ତମକୁ ବଦଳି କରାଯିବ । ଉପର ଅଫିସରଙ୍କ ଜରିଆରେ ତମର ସି ସି ଆର୍ ନଷ୍ଟକରି ଦିଆଯିବ । ତମେ କଣ୍ଟ୍ରାକ୍ଟର ? ତମକୁ ଶାସନ କରିବାର ସହସ୍ର ଉପାୟ ଆମ ହାତରେ ଅଛି ।

ଗାଅ ଏକ ସ୍ୱରରେ, ଏକ ମନରେ, ଏକ ପ୍ରାଣରେ ସେହି ମହାଶକ୍ତିର ଜୟ ।

‘ ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ’ ।

ଓ ତମେ କହିବାକୁ ଚାହଁ ତମେ ନିରପରାଧ । ଏ ମାଟିରେ ଅପରାଧର କେବଳ ଗୋଟିଏ ସଂଜ୍ଞା ରହିଛି । ତା ହେଉଚି ଶାସକର ଆଜ୍ଞାକୁ ଅବଜ୍ଞା କରିବା ଓ ଶାସକର ନୀତି ଓ କାର୍ଯ୍ୟକଳାପର ସମାଲୋଚନା କରିବା ।

ଦୁର୍ନୀତି ସର୍ବବ୍ୟାପୀ । ତେଣୁ ‘ ଦୁର୍ନୀତି, ଦୁର୍ନୀତି ’ ଚିତ୍କାର କରି ତମେ କେବଳ ଜନସାଧାରଣଙ୍କୁ ବିଭ୍ରାନ୍ତ କରୁଚ । ଦେଶର ବିକାଶୋନ୍ମୁଖୀ ଉତ୍ସାହ ଓ ପ୍ରବୃତ୍ତିକୁ ପଥଭ୍ରଷ୍ଟ କରୁଛ । ତମେ ଅପରାଧୀ । ପରାଧୀନ ଭାରତରେ ନିର୍ଭୀକତାର ଅନ୍ତଃସ୍ରୋତ ଥିଲା ପ୍ରବଳ । ସ୍ୱାଧୀନ ଭାରତରେ ଭୟର ହେମାଳ ପବନ ମାଡ଼ି ଆସୁଚି ଦିଲ୍ଲୀ ଓ ଭୁବନେଶ୍ୱରରୁ ।

ତମେ କାହାକୁ ଶ୍ୱେତକଳାଙ୍ଗ କହୁଛ ? ତମେ କାହାକୁ ଗୁଣ୍ଡା କହୁଛ ? ତମେ କାହାକୁ ଦୁର୍ନୀତିଗ୍ରସ୍ତ ଅଫିସର କହୁଛ ?

ଦେଖି ପାରୁନ ସେହି ହର୍ଷକ୍ଲେମାନ୍, ହର୍ ସଚେତନ ଶକ୍ତିର ବୈଚିତ୍ର୍ୟମୟୀ ପ୍ରକାଶକୁ ।

'ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ' ଉଦ୍ୟତେଷୁ ତମ ପାଇକ । ତେଣୁ ତମେ ଦେଖି ପାରୁନ ସେହି କଳାକଳାଙ୍ଗ, ଗୁଣ୍ଡା, ଛତର, ନାରୀହରଣକାରୀ ଅଫିସରଙ୍କୁ ଅମାପ ଶକ୍ତି ଯୋଗାଉଥିବା ଶ୍ରେଷ୍ଠ ତପସ୍ୱୀ ମୋତେ; ଏ ଭୂମିର ଶାସକକୁ ।

ତମେ ଯେଉଁଠି ଯାହାକୁ ସମାଲୋଚନା କରନା କାହିଁକି, ସେ ସମାଲୋଚନା ମାଡ଼ି ଆସୁଛି ମୋ ଉପରକୁ ।

ସୃଷ୍ଟିର ସେଇ ଆଦମ ଯୁଗରେ ପ୍ରହ୍ଲାଦକୁ ପଚାରିଥିଲା ହିରଣ୍ୟ-କଶ୍ୟପୁ ।

'କୁହ, ଏ ସ୍ତମ୍ଭ ମଧ୍ୟରେ କ'ଣ ବିଷ୍ଣୁ ରହିଛନ୍ତି ?'

'ହଁ;' ଉତ୍ତର ଦେଇଥିଲା ବିଷ୍ଣୁଭକ୍ତ ପ୍ରହ୍ଲାଦ ।

ତମେ ସେ କାହାଣୀ କ'ଣ ପଢ଼ିନାହଁ ଅରୁଣାଭ ?

ତମେ ଚ୍ୟାଲେଞ୍ଜ କରିବାର ସାହାସ କରୁଛ ଶ୍ୱେତକଳାଙ୍ଗକୁ, ଗୁଣ୍ଡାକୁ, ଦଲାଲ୍ ଘୁଷଦେଇଚାକୁ ! ସେମାନଙ୍କ ମଧ୍ୟରେ ମୋର ବିଭୂତି ରହିଛି । ସେମାନଙ୍କୁ ତମେ ଭାଷଣରେ କମ୍ବା କଲମରେ ଆଘାତ ଦିଅ, ମୁଁ ବାହାରି ଆସିବି ନରସିଂହ ରୂପଧରି ଆଜି ତାପରେ ମୋର ସେହି ଭକ୍ତ ପ୍ରହ୍ଲାଦର ମାନରକ୍ଷା ପାଇଁ ମୁଁ ତମକୁ ବିଦାରଣ କରିବାକୁ ପଛାଇବି ନାହିଁ ।

ଖାଅ, ପିଅ, ମଉଜ କର । ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ?

ତମେ ସାହିତ୍ୟିକ ଅରୁଣାଭ ! ତମ କଲମରେ ଧାର ଅଛି, ତମେ କବିତା ଲେଖ, ଗଳ୍ପ ଲେଖ; ଆମେ ତମକୁ ପୁରସ୍କାର ଦେବୁ ।

ସମାଜସେବା କର । ଜନ୍ମସୂନ କାମରେ ସହଯୋଗ ଦିଅ । କେଉଁଟି କୁଅଁଟିଏ ହେବ, କେଉଁଠି କଲଟିଏ ହେବ, ଏ ବିଷୟ ଚିନ୍ତା କର । ବନ୍ୟା, ବାତ୍ୟା ସମୟରେ କିଛି ସେବାକାର୍ଯ୍ୟ କର । ଆମେ ତମକୁ ସମ୍ମାନ ଦେବୁ ।

ଗାନ୍ଧୀଙ୍କ ତିନ ମର୍କଟ କାହାଣୀ ତମେ ଶୁଣିଥିବ ନିଶ୍ଚୟ । ଖରାପ କାମ ଦେଖନାହିଁ, ଖରାପ କଥା ଶୁଣନାହିଁ, ଖରାପ ଭାଷା କହନାହିଁ ।

ଦୁର୍ନୀତିଗ୍ରସ୍ତ ଲୋକେ ଦୁର୍ନୀତି କରୁଛନ୍ତି । ତମେ ତାଙ୍କର ଦୁର୍ନୀତି ଦେଖି ସେ ବିଷୟ କହି ଗାନ୍ଧିଜୀଙ୍କ ଆଦର୍ଶର ଅବମାନନା କରୁଛ ।

'ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳଂ
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।'

ହରିନାମ କର । ଠିକ୍ ଭାବେ ନମାଜ ପଢ଼ । ବାଇବେଲ୍‌ର କୋଟେସନ୍ ମୁଖସ୍ଥ କର ।

ସାରା ପୃଥିବୀ କର୍ମଚକ୍ରର ଅଧୀନ । ଯେ ଅନ୍ୟାୟ କରୁଛି ଭଗବାନ ତା ପାଇଁ ସଜା ରଖିଛନ୍ତି ।

'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ ।'

ବିଚ୍ ରାସ୍ତା ଉପରେ ଗୁଣ୍ଡାମାନେ ଧର୍ଷଣ କରିବା ପାଇଁ ନାରୀଟିଏ ଟେକି ନେଉଛନ୍ତି, ଘରବାରେ ଚାଲିଆସ । ଭଗବାନଙ୍କ ଅସାଧ୍ୟ କିଛି ନାହିଁ । ସେ ଅତୀତ ଯୁଗରେ ପାଞ୍ଚାଳୀର ମାନ ରକ୍ଷା କରିଥିଲେ । ତାଙ୍କର ବିନାନୁମତିରେ ପତ୍ରଟି ମଧ୍ୟ ହଲି ପାରିବ ନାହିଁ । ତମେ ତାଙ୍କ ଉପରେ ସବୁ ଦାୟିତ୍ୱ ଛାଡ଼ିଦିଅ ।

ପୂର୍ବ ଜନ୍ମରେ ସେ ନାରୀଟି ହୁଏତ ସେଇ ଗୁଣ୍ଡାମାନଙ୍କୁ ବଳବଳ କରିଥିଲା । ତେଣୁ ଏ ଜନ୍ମରେ ଧର୍ଷଣ ତାର ଭାଗ୍ୟରେ ରହିଛି ।

ଏକଶହ ବର୍ଷ ପୂର୍ବେ ଚରମ ଦାରିଦ୍ର୍ୟ ମଧ୍ୟରେ କାର୍ଲ ମାର୍କସ ନାମକ ଜଣେ ବ୍ୟକ୍ତି ଲଣ୍ଡନ ସହରରେ ତପସ୍ୟା କରୁଥିଲେ ମଣିଷର ଜୀବନ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବା ଧର୍ମ ଧାରଣା; ମଣିଷର ଲୁଚ୍ଚା ଲହୁକୁ

ମୁହୂର୍ତ୍ତି ମୁହୂର୍ତ୍ତି ଧରି ଶୋଷଣ କରୁଥିବା ପୁଞ୍ଜିବାଦୀ ବ୍ୟବସ୍ଥା ଉପରେ ତାଙ୍କର ବିଶ୍ଳେଷଣଧର୍ମୀ ମାନସର ଆଲୋକକୁ କେନ୍ଦ୍ରୀଭୂତ କରି ମରଣ ଚୋଟ ଦେବା ପାଇଁ ।

ସେ ସୃଷ୍ଟି କରିଦେବା ଚିନ୍ତାପ୍ରବାହ ମାଡିଲେ ସାରା ବିଶ୍ୱରେ ପ୍ରଚଣ୍ଡ ଶକ୍ତି ନେଇ । ଭୁଷୁଡ଼ି ପଡ଼ିଲା ଯୁଗ ଯୁଗ ଧରି ମଣିଷକୁ ବାନ୍ଧି ରଖିଥିବା ପତନଶୀଳ ଭ୍ରାନ୍ତ ଧାରଣା ଓ ଗଳିତ ଚିନ୍ତାର ମହଲଗୁଡ଼ିକ ।

ତା ପରେ ? ତାପରେ ସାମ୍ୟବାଦୀ ସମାଜ ଦେଖାଇଲା ତାର ଶୈଶବକାଳୀନ ସାରଲ୍ୟ ଓ ସ୍ୱଚ୍ଛତା । ତେଣୁ ହିମାଳୟ ଆରପାରି ଦେଶର ପୁରୁଷସିଂହ ମା ଓ ଜେଦୁଂର ଗମ୍ଭୀର ସ୍ୱର ପୃଥିବୀର ଆକାଶରେ ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା, 'ବିପ୍ଳବ ଗୋଟିଏ ଥରରେ ଶେଷ ହୋଇ ଯାଏନା, କାରଣ ଆଜିର ବିପ୍ଳବୀ କାଲିର ପ୍ରତି-ବିପ୍ଳବର ହୁଏ ଅଗ୍ରଦୂତ । ବିପ୍ଳବର ଆବଶ୍ୟକତା ଚିରନ୍ତନ ।'

ଆଧ୍ୟାତ୍ମିକତାର ଜନ୍ମଭୂମିବୋଲି ଗର୍ବ କରୁଥିବା ଦେଶରେ ଦୁର୍ନୀତି ଓ ଅପମିଶ୍ରଣ ସୀମା ଲଙ୍ଘନ କରିଛି । ଧର୍ମ ଓ ରାଜନୀତି ବ୍ୟବସାୟୀର ପଦତଳେ ଲୁଣ୍ଠିତ ହୋଇଛି । ଭାଗ୍ୟବାଦୀ ଏକ ବିଶାଳ ଜନ ସମୁହ ନିର୍ବିଗ୍ରହରେ ଓ ନିର୍ବିରୋଧରେ ସମସ୍ତ ପ୍ରକାର ଶାସକୀୟ ଅନ୍ୟାୟକୁ ମସ୍ତକ ନତକରି ସହି ନେଇଛି ।

ଚତୁର ଅପରାଧୀମାନେ ମନ୍ତ୍ରୀଗାଦିକୁ କୁଣ୍ଡଳୀକୃତ ନାଗଭଳି ମାଡ଼ି ବସିଛନ୍ତି ଦଶନ୍ଧି ଦଶନ୍ଧି ଧରି । ସମସ୍ତ ପ୍ରକାର ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇଥିବା ଏଇ ରାଜନୀତିଜ୍ଞମାନେ ଭାରତର ସବୁଠାରୁ ସମ୍ମାନିତ ସଂପ୍ରଦାୟ । ସାଧାରଣ ଲୋକଙ୍କ କଥା ଦୁରେ ଥାଉ, ସାହିତ୍ୟିକ ଓ ବୈଜ୍ଞାନିକଙ୍କ ସଭା ସମିତି ମଧ୍ୟ ଉଦ୍‌ଘାଟକ କିମ୍ବା ମୁଖ୍ୟ ଅତିଥି ରୂପେ କୌଣସି ମନ୍ତ୍ରୀଙ୍କ ପଦଧୂଳିର ସ୍ପର୍ଶ ନ ପାଇଲେ ପୂର୍ଣ୍ଣାଙ୍ଗ ବିବେଚିତ ହେଉନା ।

ଭାରତୀୟ ଜନତାର ମାନସିକ ଭିତ୍ତିଭୂମିକୁ ଅସହାୟ କରି ଦେବାପାଇଁ ସୃଷ୍ଟି ହେଲା ଭାଗ୍ୟବାଦ ।'କର୍ମ ଆଦରି ସହେ ଦୁଃଖ,କେବେହେଁ ନୋହିବ ବିମୁଖ ।' ଭାଗ୍ୟବାଦ ଚିନ୍ତାଧାରା ପକ୍ଷାଘାତଗ୍ରସ୍ତ କରାଇ ଦେଲା

ଆସ ସମାଜକୁ । ସମସ୍ତ ପ୍ରକାର ଅନ୍ୟାୟ, ଅତ୍ୟାଚାରକୁ ମୁଣ୍ଡପାତି ସହି ନେବାପାଇଁ ଭାରତୀୟ ଜନତା ପ୍ରସ୍ତୁତ ହୋଇଗଲେ ।

ଭରତନାଟ୍ୟ ଭାବଘନ ହୋଇ ଉଠିବ ଅନୁଷ୍ଠାନର ମହିମା । ପଶ୍ଚିମ ବଙ୍ଗଳାର ବିତାଡ଼ିତା ସୂର୍ଯ୍ୟଙ୍କୁ ଏଣ୍ଡି ଯେ କହିଲ, 'ଯୁଗ ଯୁଗାଧାର ଭାରତର ମନୀଷୀମାନେ ତମକୁ ଆବାହନ କରୁଥିଲେ ପ୍ରଜ୍ଞାର ସ୍ଫୁରଣ ପାଇଁ ତମେ ମୋତେ ତମଶାରୁ ଜ୍ୟୋତି ପଥକୁ ନେଅ — ମହାଦୁର୍ଗା ବନ୍ଦନା ।'

ମହାବିଦ୍ୟାଳୟର ରଙ୍ଗମଞ୍ଚରେ ବିଦ୍ୟୁତ୍ ଆଲୋକର ଉଦ୍ଭାସ ବିକାଶ ।

ଖୋଲା ପ୍ରେକ୍ଷାଳୟରେ ଅଗଣିତ ନରନାରୀଙ୍କ ଉଲ୍ଲସିତ ଚିତ୍କାର । କେବେ କେବେ କୌଣସି ବିରକ୍ତ ଯୁବକର କ୍ୟାପିଲ୍ ଧ୍ୱନି ପ୍ରେକ୍ଷାଳୟକୁ ଚମକାଇ ବାୟୁମଣ୍ଡଳର ଅନନ୍ତ ଆକାଶ ଦେହରେ ମିଶି ଯାଉଛି ।

ନାଟ୍ୟକୋଷ୍ଠର ଦ୍ୱିତୀୟ ଅବସରରେ ରଙ୍ଗମଞ୍ଚର ଦାୟିତ୍ୱ ନେଇଥିଲେ ଚତୁର୍ଥ ବର୍ଷର ଛାତ୍ରମାନେ ।

ବହୁ ପ୍ରତୀକ୍ଷିତ ମୁହୂର୍ତ୍ତ ଉପସ୍ଥିତ ହେଲେ ଦ୍ୱିତୀୟ ଘଣ୍ଟା ଧ୍ୱନିର ଅନୁଧାବନ କରି । ଯବନିକାର ପ୍ରସନ୍ନ ଉନ୍ମେଷ ପାଇଁ ବ୍ୟାକୁଳ ଉତ୍ସୁକ ନୟନ ଓ ଲମ୍ବମାନ ଗ୍ରୀବାମାନେ ରଙ୍ଗମଞ୍ଚ ପରଦାରେ ପୂର୍ଣ୍ଣ ସଚେତନ ହେଲେ ।

ଟ୍ରେନ୍ୟୋଦର ଗ୍ରୀନ୍‌ରୁମ୍ କ୍ଲାନ୍ତରେ ଘୂମାଇ ପଡ଼ିଲା । ରଙ୍ଗମଞ୍ଚରେ ରୂପସୀ ନର୍ତ୍ତକୀର ମନଚହଳା ଠାଣି ।

ବହୁ ଯୁଗ ତଳର କୋଣାର୍କ ନର୍ତ୍ତକୀ ଅତୃପ୍ତ ତୃଷା ନେଇ ଫେରି ଆସିଚି ଧରଣୀ ତଳକୁ ।

ଅଙ୍ଗେ ଅଙ୍ଗେ ତାର ଫୁଟି ଉଠୁଚି ଲାବଣ୍ୟର ପୁଷ୍ପ । ଅମର ପୁରରେ ଦେବତାର ଅର୍ଚ୍ଚନା କରି କରି ସେ ହୋଇ ଉଠିଚି କ୍ଲାନ୍ତ ।

ଅମୃତପାୟୀ ଦେବକୁଳରେ ସବୁ କିଛି ଶାଶ୍ୱତ । ସେଠାରେ ପରିବର୍ତ୍ତନ ଏକ ଅବାନ୍ତର ବ୍ୟାପାର ।

ଅବିଚ୍ଛିନ୍ନ ଆନନ୍ଦ ମନୋହର ସୃଷ୍ଟି କରିଚି ଦେବଦାସୀ ଜୀବନରେ, ସେ ଗ୍ରନ୍ଥିତ ପୃଷ୍ଠିଅରେ ମର୍ତ୍ତ୍ୟର ସୁଖ ଦୁଃଖ, ପାପ ପୁଣ୍ୟ, ଭଲ ମନ୍ଦର ବୈଚିତ୍ର୍ୟଭରା ନିଷିଦ୍ଧଫଳ ଚାଖିବାକୁ । ତାରପରେ ସିଦ୍ଧାନ୍ତଅନୁଯାୟୀ ମର୍ତ୍ତ୍ୟର ଏକ ଉଦାସୀ ଶିଳ୍ପୀର ମାନସୀରୂପେ ସେ ଅବତରଣ କରିଛି ସମୁଦ୍ରର ବେଳାଭୂମି ଉପରେ ।' ଅମରକଣ୍ଠର ଶ୍ରେଷ୍ଠ ନର୍ତ୍ତକୀ ଫେରି ଯାଇଚି ମର୍ତ୍ତ୍ୟ ଲୋକକୁ ? ଆଶ୍ଚର୍ଯ୍ୟ 'ବିଷାଦ ଓ କ୍ରୋଧର ଲହରୀମାନେ ମିଶ୍ରିତ ହୋଇ ଯାଇଛନ୍ତି ଦେବରାଜଙ୍କ ମନରେ । ତାଙ୍କର ମନେ ପଡ଼ି ଯାଉଛି ଅତୀତର ଏକ ଦୃଶ୍ୟ, ଯେଉଁଦିନେ ଉର୍ବଶୀ ପୁରୁରବା ପ୍ରେମରେ ଅନ୍ଧ ହୋଇ ଯାଇଥିଲା ।

ଅପମାନିତ ସ୍ୱର୍ଗ ପକ୍ଷରୁ ଏକ ପ୍ରଜ୍ଜ୍ୱଳିତ ଉଲ୍କା ଭଳି ଛୁଟି ଆସିଚି ଅଭିଶାପର ବୁଲେଟ୍ ।

ନର୍ତ୍ତକୀ ଭୂଲୁଣ୍ଠିତ ହୋଇଚି । ଅନ୍ତିମ ମୁହୂର୍ତ୍ତରେ ତା ମୁଖରେ ଯେଉଁ ଶଜପ୍ନୀର ହସ ବସା ବାନ୍ଧିଚି, ସ୍ୱୟଂ ଦେବରାଜଙ୍କ ପକ୍ଷରେ ମଧ୍ୟ ତା ହୋଇ ଉଠିଛି ଦୁର୍ବୋଧ୍ୟ ।

ନୃତ୍ୟ ଦର୍ଶକଙ୍କୁ ଅଭିଭୂତ କରିଛି । ନୃତ୍ୟ ପରେ ପରେ ଆରମ୍ଭ ହୋଇ ଯାଇଛି କୋରସ୍ ।

ପାଞ୍ଚଜଣ ଯୁବକ ଓ ପାଞ୍ଚଜଣ ଯୁବତୀଙ୍କ ସମ୍ମିଳିତ କଣ୍ଠରେ ଘୋଷିତ ହେଲା ତାରୁଣ୍ୟର ଜୟଗାନ ।

ସେମାନେ ଦୁର୍ବାର । ସେମାନେ ଅଜେୟ । ଝଞ୍ଜାଭଳି ସେମାନେ ବନ୍ଧହୀନ । ବନ୍ୟାଭଳି ସେମାନେ ମାଡ଼ିପିବ । ସେମାନେ ସୃଷ୍ଟିର ସ୍ମରଣ । ସେମାନେ ଆନନ୍ଦର ଉଗର । ସେମାନଙ୍କ ପଦତଳେ ଚିରଧାର କରି ଉଠିବ ଅନାସ୍ଥର, ଅବସ୍ଥର । ସେମାନେ ଏକ ନୂତନ ସୃଷ୍ଟିର ଆବାହକ, କୋରସ୍ ପରେ ନାଟକ । କୁଶଳୀ ଅଭିନେତା ଓ ଅଭିନେତ୍ରୀଙ୍କ ଦ୍ୱାରାରେ ନାଟକ ପରିବେଷଣ ମୋହକ ପରିବେଶ ସୃଷ୍ଟି କଲା ।

ବନ୍ୟା ଆସିଚି ଏକ ସୁଖୀ ପରିବାର ପାଇଁ ସର୍ବନାଶର ବାର୍ତ୍ତା ବହନ କରି । ପରିବାରର ରୂପବତୀ ଷୋଡ଼ଶୀ କନ୍ୟାକୁ ଜୀବନ ପଣ କରି

ଉଦ୍ଧାରକରିଛି ଯେଉଁ ଯୁବକ ଜଣକ,ତାର ପରିଚୟ ହଜି ଯାଇଛି,ଅଜ୍ଞାତ ।

ମାଟ୍ରିକ ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ପ୍ରଥମସ୍ଥାନ ଅଧିକାର କରି ଝିଅଟି ଆସିଛି କଟକ ସହରକୁ ରେଭେନ୍ସା କଲେଜର ଛାତ୍ରୀ ଭାବରେ । ଝିଅଟିର ମନରେ ମଝିବେଳେ ଅନୁରାଗଦୃଷ୍ଟି ଅନୁସନ୍ଧିତ୍ସା ରହିଛି ଅଜ୍ଞାତ ଯୁବକର ପରିଚୟ ଆବିଷ୍କାର କରିବା ଲାଗି ।

ରୂପ ଆଉ ଗୁଣରେ ଅତୁଳନୀୟା ନାୟିକାଟିକୁ ଗୃହାଙ୍ଗନକୁ ଆଣିବା ପାଇଁ ଅନେକ ବିଭବଶାଳୀ ପରିବାର ଉଦ୍‌ଗ୍ରୀବ ହୋଇଛନ୍ତି, କିନ୍ତୁ ଝିଅଟି ନମ୍ରଭାବରେ ସମସ୍ତ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରୁଛି ।

ଦର୍ଶକମଣ୍ଡଳୀ ବିପୁଳ ଉତ୍ସାହ ଓ ଉତ୍କଣ୍ଠା ସହକାରେ ଦୃଷ୍ଟି କେନ୍ଦ୍ରିତ କରିଛନ୍ତି ରଙ୍ଗମଞ୍ଚ ଉପରେ । ହଠାତ୍ ବିଦ୍ୟୁତ୍ ସରବରାହ ବନ୍ଦ ହେବା ଫଳରେ ପ୍ରେକ୍ଷାଳୟ ଓ ରଙ୍ଗମଞ୍ଚ ବୁଡିଗଲା ଅନ୍ଧକାରରେ । ଜନତା ଥିଲା ନିସ୍ତବ୍ଧ । ଦର୍ଶକମାନଙ୍କର ଆଶା ଥିଲା ଦଶ ପନ୍ଦର ମିନିଟ୍ ପରେ ଆଲୋକରେ ଉଦ୍ଭାସିତ ହୋଇ ଉଠିବ ଅଭିନୟ ପ୍ରାଙ୍ଗଣ ।

ଦଶ ମିନିଟ୍ ପରେ ରଙ୍ଗମଞ୍ଚ ଉପରେ ଆବିର୍ଭାବ ହେଲା ଅଧ୍ୟାପକ ଅରୁଣାଭଙ୍କର । ହାତଯୋଡ଼ି ସେ ଜଣାଇଲେ ଯେ ସହରର ସବୁ ଅଞ୍ଚଳରେ ବିଦ୍ୟୁତ୍ ଥିବାସତ୍ତ୍ୱେ କୌଣସି ଦୁର୍ବୃତ୍ତର ଦୁଷ୍ଟ କାର୍ଯ୍ୟ ଯୋଗୁଁ ମହାବିଦ୍ୟାଳୟକୁ ବିଦ୍ୟୁତ୍ ଆଲୋକ ଆଣିବା ଅନ୍ତତଃ ଆସନ୍ତା ଦୁଇଘଣ୍ଟା ମଧ୍ୟରେ ସମ୍ଭବ ହୋଇ ପାରୁନାହିଁ ।

ବାତ୍ୟାନ୍ଦୋଳିତ ସାଗରଭଳି ଅଶାନ୍ତ ହୋଇ ଉଠିଲା ଜନସମ୍ପ୍ରଦାୟ ।

'କିଏ ସେ ଦୁର୍ବୃତ୍ତ?' ପ୍ରଶ୍ନ ଉଚ୍ଚାରିତ ହେଲା ସହସ୍ର ମୁଖରେ । ଅଳ୍ପ ସମୟ ମଧ୍ୟରେ ଜନଶୂନ୍ୟ ହୋଇ ଉଠିଲା ଉଚ୍ଛ୍ୱାସ, ଆନନ୍ଦଭରା ପ୍ରେକ୍ଷାଳୟ ।

ପରଦିନ ନାଟକ ପ୍ରସ୍ତୁତିର ଦାୟିତ୍ୱ ଗ୍ରହଣ କରିଥିଲେ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ରମାନେ । ପ୍ରଥମ ଦିବସର ଅଭୂତପୂର୍ବ ସାଫଲ୍ୟ ବହୁମୁଖରେ ପ୍ରଶଂସିତ ହେବା ଫଳରେ ଦ୍ୱିତୀୟ ଦିବସରେ ଜନସମାଗମ ଥିଲା ଅତ୍ୟନ୍ତ ଦର୍ଶନୀୟ ।

ପର୍ଦା ଉନ୍ମୋଚନ ପରେ ରଙ୍ଗମଞ୍ଚରେ ଦେଖାଦେଲେ ଭଗବତୀ ଶ୍ୱେତ ପଦ୍ମାସନା । ବରଦ ହସ୍ତର ଅଭୟ ମୁଦ୍ରା ତଳେ ଆଭୂମି ପ୍ରଣତ ଅବସ୍ଥାରେ ଥିଲେ ଦୁଇଜଣ ଭକ୍ତ ଛଳ ଛଳ ନୟନ ନର୍ତ୍ତକ ଓ ନର୍ତ୍ତକୀ ।

ବିଶ୍ୱର ଆତଙ୍କ ସୃଷ୍ଟି କରୁଛି ଆଣବିକ ଅସ୍ତ୍ରର ବିପୁଳତା । ଧ୍ୱଂସ ମୁଖକୁ ଦ୍ରୁତବେଗରେ ଆଗେଇ ଚାଲିଛି ବିଂଶ ଶତାବ୍ଦୀର ଚତୁର ଶୈଳ୍ପିକ ସଭ୍ୟତା ।

'ଭଗବାନ ଯେଉଁମାନଙ୍କୁ ମାରିବାକୁ ଚାହାନ୍ତି, ସେମାନେ ପାଗଳ ହୋଇ ଯାଆନ୍ତି.' ଉକ୍ତିର ସାର୍ଥକତା ପ୍ରତିପାଦନ କରି ବିଶ୍ୱର ଜନନାୟକମାନେ ଅଜସ୍ର ଅର୍ଥ ବିନିଯୋଗ କରୁଛନ୍ତି ନୂଆ ନୂଆ ମଣିଷମରା ଅସ୍ତ୍ର ଆବିଷ୍କାର ପାଇଁ । ଦେବୀ ବୀଣାପାଣି କୃପାକଲେ ମଣିଷର ଦୁର୍ବୁଦ୍ଧିର ଅବସାନ ହୋଇ ଏ ବିଶ୍ୱକୁ ସ୍ୱର୍ଗରାଜ୍ୟ ଓହ୍ଲାଇ ଆସିବ ।

ଧ୍ୱଂସର ବିଭୀଷିକା ଓ ସୃଜନର ଗୌରବ ଫୁଟି ଉଠିଲା ନୃତ୍ୟର ସ୍ତରେ ସ୍ତରେ । ଭକ୍ତର ଆକୁଳ ଆକୃତି ସ୍ପର୍ଶକଲା ଦେବୀଙ୍କର ସାଗର ଗମ୍ଭୀର ଅନ୍ତରକୁ । ଦେବୀଙ୍କର ହସ୍ତରୁ ଝଡ଼ି ପଡ଼ିଲା ଗୋଲାପ ଗୁଚ୍ଛଟି ।

ନୃତ୍ୟ ପରେ ପରେ ଆରମ୍ଭ ହୋଇଗଲା କୋରସ୍ । ଆମେ ଭାରତୀୟ ! ଆମର ରହିଛି ମହାନ୍ ପରମ୍ପରା । ଆମେ ଉଦାର, ଆମେ ଦୁର୍ବାର । ଆମେ ସତ୍ୟ ଓ ଅହିଂସାର ପୂଜାରୀ । ଆମେ ବାପୁଜୀର ଦାୟାଦ । ଆମେ ଅନ୍ୟାୟ ସହିବୁନି, ଆମେ ଅତ୍ୟାଚାର ମାନିବୁନି । ସୁନାର ଦେଶରେ ଆମେ ଭେଦଭାବର ମରଣ ଘଣ୍ଟି ବଜାଇବୁ । ଆମେ ବିଶ୍ୱକୁ ବାଣ୍ଟିଦେବୁ ଶାନ୍ତି ଓ ମୈତ୍ରୀର କୋରସ ପରେ ପରେ ଅନ୍ତ ହୋଇଗଲା ନାଟକ ।

ମଣିଷ କଣ ଚିରଦିନ ଅଭିଶପ୍ତ ? କେବେ ପଲକରେ ଦିନେ ଜାତି କ'ଣ ସବୁଦିନ ପାଇଁ ହରାଇ ବସିବ ପାଗଳାମିକୁ ?

ଦେଶସାରା ଚାଲିଛି ଅନ୍ୟାୟର ଅଖଣ୍ଡ ରାଜତ୍ୱ । ଗାନ୍ଧୀ ବସାଇଲା ନଗର ଅସଂଖ୍ୟ ନରନାରୀ ହୋଇ ଉଠିଛନ୍ତି ଷଡ଼ଯନ୍ତ୍ରର ଶିକାର ।

ଉଦ୍ବୋଧୀ ହୋଇ ଉଠିଲ ଶୁଭକାନ୍ତ । ପ୍ରଚଣ୍ଡ ପ୍ରତିଭା ଓ ସାଂଗଠନିକଶକ୍ତିକୁ ସେ ବିନିଯୋଗ କରୁଥିଲ ସଭିଙ୍କୁ ଗାଢ଼ଚ୍ୟୁତକରିବା ପାଇଁ ।

ସଂଗଠନକୁ ମଜବୁତ୍ କରିବା ପାଇଁ ଆଗେଇ ଯାଇ ଯାଞ୍ଚ ଏକ ନୂତନ ଆବିଷ୍କାର କରି ଶିହରି ଉଠିଲ ଶୁଭକାନ୍ତ । ସଂସ୍ଥାରେ ଶୃଙ୍ଖଳା ଓ କର୍ମର ପୃଷ୍ଠପୋଷକତା କରନ୍ତି ଯେଉଁମାନେ, ସେମାନଙ୍କ ଠାରେ ସେ ଦେଖିଲ ଫାନାଟିସିଜମ୍‌ର ପ୍ରବଳ । କୌଣସି ଡକ୍ଟ୍ରିନ୍‌ର ଅନୁଗତ କାହ୍ନମା ସ୍ବଭାବରେ ସେମାନେ ଉତ୍କୃଷ୍ଟ ଯୋଗ୍ୟ ତ୍ୟାଗ କରି ପାରନ୍ତି କିନ୍ତୁ ସେମାନଙ୍କର ମସ୍ତିଷ୍କର ସମସ୍ତ ବାତାୟନ ରୁଦ୍ଧ ଥିବା ଫଳରେ ସେମାନେ ହୋଇ ଉଠିଛନ୍ତି ସେକ୍ଟ୍‌ଧର୍ମୀ ମଣିଷ । ନାଜିବାଦ, ଫାସିଷ୍ଟ-ବାଦ କିମ୍ବା ଫଣ୍ଡାମେଣ୍ଟାଲିଜିମ୍‌ର ନାବକୁ ଅନୁକୂଳ ସ୍ରୋତ ଯୋଗାଇ ଥାନ୍ତି ଠିକ ଏଇ ଶ୍ରେଣୀର ବ୍ୟକ୍ତିମାନେ ।

ଅନ୍ୟ ଏକ ଶ୍ରେଣୀଠାରେ ଅନ୍ତର୍ନିହିତ ଲକ୍ଷିତ ଭଣ୍ଡାମି । ସେମାନେ ସମ୍ମାନ ଚାହାନ୍ତି, ଅର୍ଥ ଚାହାନ୍ତି ଏବଂ କୌଣସି ପ୍ରକାର ଚରମ ତ୍ୟାଗ ନକରି ତ୍ୟାଗୀର ଖୋଳ ପିନ୍ଧିବାକୁ ପସନ୍ଦ କରନ୍ତି । ଉଜ୍ଜ୍ବଳ ଶଗଡ଼ ମଞ୍ଚରେ ବସିବାକୁ ସେମାନଙ୍କର ପ୍ରବଳ ସ୍ପୃହା । ସେମାନେ ଚମତ୍କାର କଥା କହି ଅନ୍ୟକୁ ଆକୃଷ୍ଟ କରନ୍ତି । ସେମାନେ ମଞ୍ଚରେ ରହି ଅନ୍ୟକୁ ଶହୀଦ ହେବାକୁ ପ୍ରରୋଚିତ କରନ୍ତି ଏବଂ ଶହୀଦର ମୃତ୍ୟୁପରେ ତାର ଗୁଣ ଗାନକରି ଆପଣାର ପ୍ରତିଷ୍ଠାକୁ ପ୍ରକାରାନ୍ତରେ ବଢ଼ାଇ ଚାଲନ୍ତି । ଯେତେବେଳେ ତମମଲୀଳା ଧ୍ବଂସ ହୋଇ ଯାଏ ଓ ବିପ୍ଳବ ସଫଳ ହେବାର ମୂହୂର୍ତ୍ତ ପହଞ୍ଚିଯାଏ, ସେମାନେ ଫଟାଫଟ୍ ବିପ୍ଳବୀର ସାଜ ପିନ୍ଧି ବ୍ୟାଘ୍ରଗର୍ଜନ ସହ ରଙ୍ଗମଞ୍ଚରେ ଦେଖାଦିଅନ୍ତି । ଏମାନେ ସାଧାରଣତ କୁଟିଳ ପ୍ରକୃତିର ଓ ଭେଦ ସୃଷ୍ଟି କରିବାରେ ଓସ୍ତାଦ୍ ।

ଶୁଭକାନ୍ତ ଏଇ ଦୁଇଟି ଶ୍ରେଣୀର ଅଭାବ ବୁଦ୍ଧି ଭଗାଇବାକୁ ପ୍ରଚେଷ୍ଟ ଥିଲ କିନ୍ତୁ ଏ ଦୁଇ ଶ୍ରେଣୀ ବ୍ୟତୀତ ଦଳରେ ଯେଉଁ ଖୋଲା ମସ୍ତିଷ୍କ ଉଦାରବାଦୀ ବ୍ୟକ୍ତିମାନେ ଥିଲେ ସେମାନେ ପରସ୍ପର ସହିତ ବାଦାନୁବାଦରେ ଲିପ୍ତଥିଲେ । ସେମାନଙ୍କ ମଧ୍ୟରେ ଶୃଙ୍ଖଳା ଓ ସହଯୋଗର ଘୋର ଅଭାବ ରହିଥିଲା ।

ଉଗ୍ରବାଦୀ ମାନଙ୍କର ଶକ୍ତି ପ୍ରଚଣ୍ଡ ଭାବରେ ବୃଦ୍ଧି ପାଉଥିଲା । ତଥାପି ଦେଶର ଭବିଷ୍ୟତ କଥା ଭାବି ଶୁଭକାମୀ ବ୍ୟଗ୍ର ହୋଇ ପଡ଼ୁଥିଲେ ।

ବୌଦ୍ଧିକ ବାର୍ତ୍ତା ବହନ କରୁଥିବା ସତ୍ତ୍ୱେ ନାଟକଟିର ସାବଲୀଳ ସଂଳାପ ଓ ବଳିଷ୍ଠ ଚରିତ୍ର ଜନତାଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲା । ନାଟକଟିର ପରିଣତ ସନ୍ଦର୍ଭରେ ଲୋକପ୍ରିୟତା କେବଳ ସାଧାରଣ ଜନତାର ନୁହେଁ, ବୁଦ୍ଧିଜୀବୀ ଶ୍ରେଣୀର ମଧ୍ୟ ପ୍ରଚୁର ରହିଥିଲା ।

ପୂର୍ବ ବର୍ଷର ବିଦ୍ୟୁତ୍ ବିଭ୍ରାଟ ଯୋଗୁଁ ଛାତ୍ରମାନେ ଓ ଅଧ୍ୟାପକ ଗୋଷ୍ଠୀ ସମସ୍ତ ସମ୍ଭାବ୍ୟ ପ୍ରତିରୋଧମୂଳକ ପଦକ୍ଷେପ ନେଇଥିଲେ ।

ହଠାତ୍ ବିସ୍ମୟ ଓ ବିରକ୍ତିର ଲହରୀ ସୃଷ୍ଟି କରି ଆଲୋକମାଳା ଅନ୍ଧାର ଠାରେ ଆତ୍ମସମର୍ପଣ କଲା । ମୁହୂର୍ତ୍ତକ ମଧ୍ୟରେ ଛାତ୍ରସମାଜ ଏକ ଅନିବାର୍ଯ୍ୟ ଜୁଆର ଭଳି ମାଡ଼ି ଚାଲିଲା ଏକ ଉଦ୍ଦିଷ୍ଟ ଦିଗରେ ।

ଅବଚେତନର ପଶୁଶକ୍ତି ଜାଗ୍ରତ ହୋଇ ତାର ଶିଙ୍ଗ, ଦାନ୍ତ ଓ ନଖକୁ ଧରି ପ୍ରଳୟ ସୃଷ୍ଟି କରିବାକୁ ଉଦ୍ୟତ ହୋଇଥିଲା । ଆଇନ ମାନୁଥିବା ନମ୍ର, ଶାନ୍ତ ଛାତ୍ର ସମାଜ ନିମେଷମାତ୍ରକେ ରକ୍ତପିପାସୁ ଆତତାୟୀରେ ରୂପାନ୍ତରିତ ହୋଇ ସାରିଥିଲା ।

ବୁଦ୍ଧିଜୀବୀମାନେ ଓ ଅଧ୍ୟାପକମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଇଥିଲେ ।

ଆବେଗର ବିଜୟ ହୋଇଥିଲା । ଯୁକ୍ତିନିଷ୍ଠ ମନ ହାରି ପକ୍ଷର ସୈନିକ ଭଳି ପଳାୟନ କରି ସାରିଥିଲା ।

ଏହା ଥିଲା ସେହି ମୁହୂର୍ତ୍ତ, ଯେତେବେଳେ ସବୁଦ୍ୱାର ମୁକ୍ତ ହୋଇଯାଇ ସର୍ବନାଶର ବାତ୍ୟା ବହିଆସେ । ତିରିଶଜଣ ମତାନ୍ଧ ତେଲୁଗୁ ଛାତ୍ର ସମାବେଶରେ ଦୁଇଦିନ ଧରି ବିଦ୍ୟୁତ୍ ବିଭ୍ରାଟ କରିଥିଲେ । ସେମାନଙ୍କର ବର୍ବର ବର୍ଜିତ କାର୍ଯ୍ୟକଳାପ ସମସ୍ତ ଓଡ଼ିଆ ଛାତ୍ରଙ୍କ ଆବେଗକୁ ବିସ୍ଫୋରଣ ସ୍ତରକୁ ନେଇ ସାରିଥିଲା ।

ଚାରିଜଣ ଅପରାଧୀଙ୍କ ମଧ୍ୟରୁ ତିନିଜଣ ପଳାୟନ କରିଥିଲେ । କେବଳ ଜଣେ ପଳାୟନର ସୁଯୋଗ ନପାଇ ପଶ୍ଚାଦ୍ଧାବନକାରୀ ପୁଲିସଙ୍କ ନିକଟରେ ଆତ୍ମସମର୍ପଣ କରିଥିଲା ।

ଏ ଦେଶର ଇତିହାସ ଓ ସାହିତ୍ୟର ବହୁ ଉପାଖ୍ୟାନ ଧର୍ମୀୟ ଓ ପ୍ରାନ୍ତୀୟ ଭେଦଭାବର ବୀଜ ରୋପିତଏ କୋମଳ ମସ୍ତିଷ୍କର ସ୍ନାୟୁକଣିକା ଅଭ୍ୟନ୍ତରରେ ।

ସଭ୍ୟତାକୁ ଲାଞ୍ଛିତ ଓ ଲୁଣ୍ଠିତ କରିଛନ୍ତି ଯେଉଁ ନୃଶଂସ ଶକ୍ତିଶାଳୀ ରାଜନ୍ୟଗୋଷ୍ଠି ସେମାନଙ୍କର କାର୍ଯ୍ୟକଳାପର ବର୍ଣ୍ଣନାହିଁ ଲିପିବଦ୍ଧ କରିଛି ଇତିହାସ ।

ଦରମାପ୍ରାପ୍ତ ଦରବାରୀମାନେ ପୃଷ୍ଠପୋଷକର କିମ୍ବା ତାଙ୍କର ପୂର୍ବପୁରୁଷଙ୍କର କାର୍ଯ୍ୟାବଳୀର ଅତିଶୟୋକ୍ତି ଗର୍ଭିତ ବର୍ଣ୍ଣନାକୁ ଯେଉଁଭଳି ଇତିହାସ ଆଖ୍ୟା ଦେଇଥିଲେ, ସେଇ ଧାରାକୁ ଏବେମଧ୍ୟ ଐତିହାସିକ ବିସର୍ଜିତ କରିନାହାଁନ୍ତି ।

ଖ୍ୟାତନାମା ତେଲୁଗୁ କବି ଶ୍ରୀଶ୍ରୀ ଲେଖିଥିଲେ 'ଏଦେଶ ଚରିତ୍ରରେ ମୁଁ କେଉଁଠି ଗର୍ବର କାରଣ ଦେଖି ପାରୁନି । ଏ ଦେଶର ଇତିହାସରେ ଭର୍ତ୍ତି କେବଳ ଲୁଣ୍ଠନ, ପରପୀଡ଼ନ' । ହିନ୍ଦୁ ସନ୍ତାନ ଇତିହାସ ପଢ଼ି ଭାବେ, ଭାରତର ଯାବତୀୟ ଦୁର୍ଦ୍ଦଶା କେବଳ ମୁସଲମାନମାନଙ୍କ ଯୋଗୁଁ । ସେମାନଙ୍କ ମଧ୍ୟରେ ଯେଉଁମାନେ ହିନ୍ଦୁ ନାରୀର ଇଜ୍ଜତ ନେଇଥିଲେ, ହିନ୍ଦୁ ଉପରେ ଜିଜିୟାକର ବସାଉଥିଲେ, ସେମାନଙ୍କର କାର୍ଯ୍ୟକଳାପର ଟିକିନିଖି ବର୍ଣ୍ଣନା ହିନ୍ଦୁ ସନ୍ତାନର ଅବଚେତନାରେ ସୃଷ୍ଟି କରେ ମୁସଲମାନ ପ୍ରତି ଘୃଣା ।

ଓଡ଼ିଶାର ଇତିହାସ ପାଠ କରୁଥିବା ଓଡ଼ିଆ ଯୁବକ ଭାବେ ସମଗ୍ର ପୃଥିବୀରେ ଓଡ଼ିଆ ହେଉଛି ସବୁଠାରୁ ବୀର ଜାତି । ଜଣେ କପିଳେନ୍ଦ୍ର, ଜଣେ ଖାରବେଳ କିମ୍ବା ପୁରୁଷୋତ୍ତମର ଦିଗ୍‌ବିଜୟୀ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ଏବଂ ସମ୍ମାନରେ ଆଚ୍ଛନ୍ନ ହୋଇଯାଏ ତାର ମାନସ ।

ତେଲଙ୍ଗା ଗାଇଡ ସ୍ବରେ ଅନ୍ଧ୍ରର ସବୁକିଛି ସୁନ୍ଦର, ଶୁଭ୍ର ଓ କଲ୍ୟାଣ ପ୍ରଦ । ଅନ୍ଧ୍ରର ପ୍ରଭାବଶାଳୀ ଶାସକ କୃଷ୍ଣ ଦେବରାୟଙ୍କ ହସ୍ତରେ ବହୁ ପ୍ରତାପଶାଳୀ ସମ୍ରାଟ ପରାସ୍ତ ହୋଇ ଥିବାର ଉପାଖ୍ୟାନ ବାରମ୍ବାର ବର୍ଣ୍ଣନା କରି ମଧ୍ୟ ସେ କ୍ଲାନ୍ତ ଅନୁଭବ କରେନି ।

ମୁଣ୍ଡିମେସୁ ଗୋରଙ୍କ ପଦତଳେ କରୁଣା ଭିକ୍ଷା କରୁଥିବା ବିଭିନ୍ନ ପ୍ରାନ୍ତର ନିର୍ବୀର୍ଯ୍ୟ ଶାସକଙ୍କର କାର୍ଯ୍ୟ କଳାପ ସମ୍ପର୍କରେ ନୀରବ ରହିଛି ପ୍ରାନ୍ତୀୟ ଇତିହାସ ଗ୍ରନ୍ଥ ।

ଭୁଲ ଦୃଷ୍ଟିକୋଣରୁ ଲେଖା ଯାଇଥିବା ଇତିହାସ ସୃଷ୍ଟି କରେ ପରାଧୀନ ମଣିଷ, ବହୁ ପରାଧୀନ ମଣିଷର ସାମୂହିକ ହିଷ୍ଟିରିଆ ବିପଦଗ୍ରସ୍ତ କରାଏ ସମାଜର ଶୁଭଙ୍କର ଧାରଣା ସମୂହକୁ ଓ ଜୀବନଧର୍ମୀ ପ୍ରବୃତ୍ତି ସମୂହକୁ ।

ହିଷ୍ଟିରିଆ ରୋଗଗ୍ରସ୍ତ ମସ୍ତିଷ୍କ ସୃଷ୍ଟ ଯୁଦ୍ଧର ଅବସାନ ହେଲାବେଳକୁ ଏକ ସମୃଦ୍ଧ ସୁଖୀ ଜନପଦ ପରିଣତ ହୋଇଯାଇ ଥାଏ ଶ୍ମଶାନରେ ।

ରାତିର ଉଲଙ୍ଗ ନୃତ୍ୟପରେ ସୁପ୍ତନାଗରିକ ଶୁଚିସ୍ନିଗ୍ଧ ପ୍ରଭାତରେ ଶଯ୍ୟାତ୍ୟାଗ କରି ଆପଣାର କୃତ୍ୟ ଦେଖି ଶିହରି ଉଠେ, ଅନୁତାପ କରେ ।

ପୁତ୍ରହୀନା ଜନନୀ, ପତିହରା ରମଣୀ, ଲୁଣ୍ଠିତ ଷୋଡ଼ଶୀ, ବିକଳାଙ୍ଗ ପୁରୁଷ ଓ ଭଗ୍ନ ମହଲର ପ୍ରେତ ତାର ମଣିଷ ପଣିଆକୁ ଧିକ୍କାର କରେ ।

ସେ ଦିନ ମହାବିଦ୍ୟାଳୟ ପ୍ରାଙ୍ଗଣରେ ଶୁଭୁଥିଲା କଳକଳା ରବ ଓ ପ୍ରାନ୍ତର ସାରା ନାଚୁଥିଲେ ରକ୍ତମୁଖା ରାକ୍ଷସୀମାନେ ।

ହ୍ବରଶତ ହାତ ଉପରକୁ ଉଠୁଥିଲା ଜଣେ ଅପରାଧୀ ଛାତ୍ରକୁ ଆଘାତ ଦେବା ଲାଗି । ଅସହାୟ ଅଧ୍ୟକ୍ଷ ଓ ଅଧ୍ୟାପକଙ୍କ ଗୋଷ୍ଠି ଠେଲି ହୋଇ ଯାଇଥିଲେ ଦୂରକୁ ମଣିଷସୃଷ୍ଟ ଦୁଆରରେ ।

ଅରୁଣାଭ ଦ୍ରୁତଗତିରେ ଆଗେଇଗଲା ଝଡ଼ର ସେଣ୍ଟ ଜ.ଭି ହଷ୍ଟେଲକୁ । ସେ କଳ୍ପନା କରି ପାରୁଥିଲା ସେଣ୍ଟ ବର୍ଣ୍ଣଶିକାମଧ୍ୟ ମୁହୂର୍ତ୍ତଙ୍କୁ ଯେତେବେଳେ ମହାବିଦ୍ୟାଳୟ ପ୍ରାଙ୍ଗଣରେ ଚଢ଼ି ରହୁଥିବ ଏକ ବାଳକର ଶବ ଆଉ ସହରର ବିଭିନ୍ନ ମହଲ ସଙ୍ଗୀନ ହେଉଥିବ ଏକ ରକ୍ତସ୍ନାତ ଅଗ୍ନ୍ୟୁତ୍ସବର ।

ଅରୁଣାଭ ଆଖିବୁଜି ଦେଉଥିଲା ଓ ଠେଲିହୋଇ ଠିକ୍ କେନ୍ଦ୍ର ସ୍ଥଳକୁ ଆସିଯାଇ ଥିଲା ।

ଆଃ ! ସେମାନେ ସହରକୁ ରକ୍ଷାକରିଦେଲେ ଏକ ମାରାତ୍ମକ ସାମ୍ପ୍ରଦାୟିକ ଦଙ୍ଗା କବଳରୁ ।

ଦୁଇଜଣ ବଳୁବନ୍ତ ଯୁବକ ଓ ଦୁଇଜଣ ଲ୍ୟାବରେଟରୀ ଆସିଷ୍ଟାଣ୍ଟ ବନ୍ଧୁ ହାତର ପ୍ରହାରକୁ ଅମ୍ଳାନ ବଦନରେ ଗ୍ରହଣ କରି ସୁରକ୍ଷାର ଛାତି ଟେକି ଧରିଥିଲେ ଅପରାଧୀ ଉପରେ ।

ଅରୁଣାଭ ତୁରନ୍ତ ସେମାନଙ୍କ ଦଳରେ ଯୋଗ ଦେଲା ।

ଧୀରେ ଧୀରେ ପୈଶାଚିକ ଆବେଗର ପ୍ରଭାବ ମ୍ଳାନ ହେବାକୁ ବସିଲା । କେତେଜଣ ବିଚାରବାନ୍ ଛାତ୍ର ଆଗଭୁଆଇ ଅନ୍ୟମାନଙ୍କୁ ବୁଝାଇବାକୁ ଚେଷ୍ଟାକଲେ ।

କୌଣସି ଜଣେ ବିଚାରବାନ ବ୍ୟକ୍ତି ସମ୍ଭବତଃ ପୋଲିସକୁ ଖବର ଦେଇଥିଲେ । ପିଲଙ୍କ ସହିତ ଯୁକ୍ତିତର୍କ ଚାଲିଥିଲାବେଳେ ଏ ଏସ୍ ପି ସଦଳବଳେ ସେଠାରେ ପହଞ୍ଚିଗଲେ । ସମସ୍ତ ସମ୍ବାଦ ଶୁଣି ଏ ଏସ୍ ପି ପ୍ରତ୍ୟେକ ଅପରାଧୀ ଛାତ୍ରର ଠିକଣା ନେଇ ସେମାନଙ୍କ ଘରକୁ ଗୋଟିଏ ଗୋଟିଏ ଦଳ ପୋଲିସ୍ ପଠାଇଲେ ।

ସମସ୍ତ ବିଷୟର ପୁଙ୍ଖାନୁପୁଙ୍ଖ ତଦନ୍ତ ପରେ ଅପରାଧୀ ଚାରିଜଣଙ୍କୁ ଜବରଦସ୍ତି ଟି ସି ଦିଆଯାଇ କଲେଜରୁ ବିଦାକରି ଦିଆଗଲା ।



ହୋଲି, ତାରୁଣ୍ୟର, ଆନନ୍ଦର ମିଠା ମିଠା ଲହଡ଼ା ଗୁଡ଼ାଏ ମାଡ଼ି ଯାଉଛି ।

ଜାମିକା ମଣିଷ, ଗମ୍ଭୀର ମଣିଷ, ସମସ୍ତର ଦାୟିତ୍ୱ ସ୍ୱୀକାର କରୁଥିବା ମଣିଷ, ସହଜ ହୋଇ ଯାଉଛି, ସ୍ୱାଭାବିକ ହୋଇ ଯାଉଛି । ତାହାରେ ବୁଢ଼ା ଟିଏ ନାଚୁଛି । ମୁହଁରେ ବିଭିନ୍ନ ରକମ ରଙ୍ଗ, ମୁଣ୍ଡରେ ଅଦ୍ଭୁତ ଧରଣର ଟୋପି, ପିଠି ପଛପଟରେ କଦଳୀ ପଟୁକାର ଲଙ୍ଗୁଳ; ବୁଢ଼ାଟି ନିଜକୁ ସଜାଇଛି ମଣିଷର ଆଦିପୁରୁଷ ଭଳି ।

ବୟସର ବୋଝ ମୁଣ୍ଡରୁ ଖସି ପଡ଼ୁଛି, ଶ୍ରେଷ୍ଠ ପିଲାଟିଏ ଭଳି ବୁଢ଼ା ଦାନ୍ତ ଦେଖାଉଛି, ଖଲ୍ ଖଲ୍ ହସି ଦେଉଛି ଆଉ ଘୁରିପଟେ ଲଙ୍ଗୁଳ ବୁଲାଇ ଆଣୁଛି ଥରକୁ ଥର ।

ବୁଢ଼ା ଗୁହାପଟରେ ପଲେ ସ୍ତ୍ରୀ ଲୋକ । ସାହିରେ ଯେଉଁମାନେ ଚଣ୍ଡୀ ମୂର୍ତ୍ତିପରି କେତେ କେତେ ନାଚୁଥାନ୍ତି, ପାଟିରେ ଯେଉଁମାନଙ୍କର ତୁଣ୍ଡକଥା ସବୁବେଳେ ଘରକରି ରହିଥାଏ, ଆଜି ସେମାନେ କେତେ ନିରୀହ, କେତେ ଶାନ୍ତ ଜଣାପଡ଼ୁଛନ୍ତି ।

ବୁଢ଼ାକୁ ସେମାନେ ଖତେଇ ହେଉଛନ୍ତି, ବୁଢ଼ାର ଲଙ୍ଗୁଳ ଟାଣି ଦେଉଛନ୍ତି, ବୁଢ଼ାର ହାତମୋଡ଼ି ଦେଉଛନ୍ତି । ବୁଢ଼ା ବଧା ଉଞ୍ଚାଇ ଆଖି ତରଟି ସେମାନଙ୍କ ପଛରେ ମାଡ଼ି ଯାଉଛି ।

ପିଲାମାନେ ପିଚକାରୀରେ ରଙ୍ଗ ଭର୍ତ୍ତିକରି ବୁଢ଼ା ଉପରକୁ ଛାଟୁଛନ୍ତି ।

ସମସ୍ତଙ୍କର କଥାବାର୍ତ୍ତା ତେଲଙ୍ଗାରେ ।

ଅରୁଣାଭ କେତେଶବ୍ଦ ବୁଝୁନ୍ତି, କେତେ ଶବ୍ଦ ବୁଝିପାରୁନ ।

'ନମସ୍କାରଣ୍ଡି' ବୁଢ଼ାଟି ଅରୁଣାଭଙ୍କୁ ଦେଖି ହାତ ଯୋଡ଼ଲା । ପ୍ରତ୍ୟୁତ୍ତରରେ ଆପେ ଆପେ ଯୋଡ଼ି ହୋଇଗଲା ଅରୁଣାଭର ପାପୁଲି ଦୁଇଟି ।

ମଣ୍ଡଣା ସହରର ତେଲଙ୍ଗା ବୁଢ଼ାଟି ସହିତ ସେଇଥିଲା ପ୍ରଥମ ସାକ୍ଷାତ ଅରୁଣାଭର ।

ବେଳେବେଳେ ସେ ପଶି ଆସୁଥିଲା ଅରୁଣାଭର ଘର ଭିତରକୁ । ତେଲଙ୍ଗାରେ ସେ ପଚାରି ବସୁଥିଲା ଅନେକ କଥା ।

ଅରୁଣାଭ ବେଳେ ବେଳେ କିଛି ବୁଝି ନ ପାରୁଥିଲେ ବି ହସି ଦେଉଥିଲା ବା ମୁଣ୍ଡ ଟୁଙ୍ଗାଇ ଦେଉଥିଲା ।

ଥରେ ଅରୁଣାଭଙ୍କୁ ଜ୍ୱର ହେଲା । ଭାବେ ଦୁଇଦିନ ଉପବାସ କଲେ ଜ୍ୱର ଛାଡ଼ିଯିବ ବୋଲି ଅରୁଣାଭ ଭାବିଲା । କିନ୍ତୁ ଜ୍ୱରତ ବହୁଦିନ ଧରି ଛାଡ଼ିଲା ନାହିଁ ।

କେତେ ଗୁଡ଼ିଏ ଓ ସହକର୍ମୀମାନେ ଡାକ୍ତର ଡାକି ଆଣିଲେ । ଡାକ୍ତର ଯିବାପରେ ଘର ଭିତରକୁ ପଶିଆସିଲା ତେଲଙ୍ଗା ବୁଢ଼ାଜଣକ । ହାତରେ ତାର ଦୁଇଟି ଆପଲ୍ ଓ କିଛି ଅଙ୍ଗୁର ।

ବୁଢ଼ାଟି ଏତେ ମଧ୍ୟ ଓଡ଼ିଆ ବୁଝୁ ନ ଥିଲା ।

ଅରୁଣାଭ ସହିତ ତାର କଥାବାର୍ତ୍ତା ବେଳେ ବେଳେ ଠାରରେ ଚାଲୁଥିଲା ।

ତଥାପି ସେ ପ୍ରତିଦିନ ଆସୁଥିଲା ଓ ଅରୁଣାଭ ତାକୁ ତା'ସ୍ୱାସ୍ଥ୍ୟରୁ ଡାକ ଥରେ ତାମସା କରୁଥିଲା ।

ଥରେ ଜଣେ ବ୍ୟକ୍ତି କହିଥିଲେ, 'ପୃଥିବୀରେ କେବଳ ଗୋଟିଏ ଭାଷା ରହିଛି । ସେ ହେଉଛି ହୃଦୟର ଭାଷା ।'

ଓଡ଼ିଆ ଭାଷା ଓ ସଂସ୍କୃତିରେ ଅକୃତ୍ରିମ ଭକ୍ତ ଅରୁଣାଭର ସବୁଠାରୁ ପ୍ରିୟ ବ୍ୟକ୍ତି ଥିଲା ସେହି ତେଲଙ୍ଗା ବୃଦ୍ଧଟି । ଥରେ ଏକ ଜନ ସଭାରେ ଭାଷଣ ଦେଇ ଓଡ଼ିଆ ସମସ୍ୟା ସମ୍ପର୍କରେ ନିଜର ଦୃଷ୍ଟିକୋଣର ସ୍ପଷ୍ଟୀକରଣ ଦେଇଥିଲା ଅରୁଣାଭ ।

'ଆମେ ବିଚ୍ଛିନ୍ନତାବାଦୀ ନୋହୁଁ, ଆମେ ସମନ୍ୱୟବାଦୀ ।

ଆଦିବାସୀ ମାଟିରେ ଠିଆହୋଇ ଆମେ କେବେ ସାହସ କରିବୁନି ଏକଥା କହିବା ପାଇଁ ଏଠାରେ ଥିବା ତେଲଙ୍ଗାମାନେ ଓଡ଼ିଶା ଛାଡ଼ି ଚାଲି ଯାଆନ୍ତୁ ।

ତେଲଙ୍ଗାମାନେ ରାୟଗଡ଼ାକୁ ସମୃଦ୍ଧ କରିଛନ୍ତି । କୃଷି ଓ ଶିଳ୍ପ ଉଭୟ କ୍ଷେତ୍ରରେ ସେମାନଙ୍କର ଅବଦାନକୁ କୌଣସି ବିବେକବାନ୍ ବ୍ୟକ୍ତି ଅଗ୍ରାହ୍ୟ କରିପାରିବ ନାହିଁ ।

ଆମେ ଅନୁଭବ କରୁଛୁ ଏଠାକାର ତେଲଙ୍ଗାମାନେ ଏମିତି, ପାଣି ଓ ପବନକୁ ନିଜର ବୋଲି ସ୍ୱୀକାର କରିପାରିନାହାନ୍ତି । ଏ ମାଟିର ଭାଷାକୁ ସେମାନେ ଅସ୍ପୃଶ୍ୟ ମନେ କରିଛନ୍ତି । ଓଡ଼ିଶାର ରାଜନୈତିକ ଜୀବନ ଓ ସାଂସ୍କୃତିକ ଜୀବନର ମୂଳସ୍ରୋତରୁ, ରାୟଗଡ଼ର ବହୁ ସଂଖ୍ୟକ ବ୍ୟକ୍ତି ବିଚ୍ଛିନ୍ନ ରହିବା ଉଚିତ ନୁହେଁ ।'

ଅରୁଣାଭ ଆଶ୍ଚର୍ଯ୍ୟ ହୁଏ ଜେକୋରପୁର ମଳଚଣ୍ଡ ସଂଗଠନର କାର୍ଯ୍ୟକଳାପ ଦେଖି ।

ମଳଚଣ୍ଡର ନେତା ଓ କର୍ମୀ ଅପାର ତ୍ୟାଗ କରିବାକୁ ପ୍ରସ୍ତୁତ ଓଡ଼ିଆର ସ୍ୱାର୍ଥରକ୍ଷା ପାଇଁ ।

ଶିଳ୍ପପତିରେ ଭ୍ରୂକୁଟି କିମ୍ବା ପ୍ରଲୋଭନ ପଥଭ୍ରଷ୍ଟ କରିପାରିନି ମଳଚଣ୍ଡର ନେତା କିମ୍ବା କର୍ମୀମାନଙ୍କୁ ।

ରାୟଗଡ଼ ମାଟିରେ ଓଡ଼ିଆର ଇଜ୍ଜତ ରକ୍ଷାପାଇଁ ଜୀବନଦାନ କରିଥିଲା ମଳଚଣ୍ଡର କର୍ମୀ ରମାକାନ୍ତ ପାଣ୍ଡିତ ।

ଜଳଚନ୍ଦ ସହ ସ୍ୱର ମିଳାଇ ଅରୁଣାଭ ପ୍ରଶ୍ନ କରେ, 'ଶିଳ୍ପପତିଙ୍କ ଦାମୀ ଅଣ୍ଟଥି ମହଲରେ ଚର୍ଚ୍ଚିତ ଓଡ଼ିଶାର ଟିଣନେତାମାନେ କେବଳ ଏ ବିଷୟରେ ସଚେତନ ହେବେ ଯେ ନେଜକେପୁରର କାଗଜକଳରେ ଓଡ଼ିଆ କର୍ମଚାରୀଙ୍କ ସଂଖ୍ୟା ଶତକଡ଼ା ତେରଶି ବ ନୁହେଁ ଏବଂ ସବୁଗଡ଼ ଚାନ୍ଦକା ତଥା ଫେଟସମେଙ୍ଗାନଜ କାରଖାନାରେ ଓଡ଼ିଆ କର୍ମଚାରୀଙ୍କ ସଂଖ୍ୟା ଶତକଡ଼ା ଶୂନ୍।'

ଭାରତର ଦରବାରରେ ଓଡ଼ିଆ ଅବହେଳିତ।

ଓଡ଼ିଶାର କଳକାରଖାନାରେ ଓଡ଼ିଆଙ୍କର ସ୍ଥାନ ନାହିଁ।

ଆଦିବାସୀର ଜନ୍ମମାଟିରେ ଆଦିବାସୀ ଅପାଂକ୍ତେୟ।

ଏକଦା ଶିଖ୍ ମହାଇଙ୍କୁ ଜନ୍ମ ଦେଇଥିବା ଉତ୍କଳ ଜନନୀ ଯୁଗ ଯୁଗର ଦଲାଲ୍ ପ୍ରଭାବରେ କାର୍ପଣ୍ୟ କରୁନାହାନ୍ତି। ଅନ୍ଧକାରମୟ ସୁଡ଼ଙ୍ଗର ଚମଚଟିଆମାନଙ୍କ ଭଳି ଏମାନେ ଓଡ଼ିଶା ପିଟିପିଟି ସବୁବେଳେ ଆଲୋକକୁ ଲୁଚାଇଦେବାର ଚେଷ୍ଟାକରି ଆସିଛନ୍ତି।

ଭୁବନେଶ୍ୱରରେ ଅଧୁନା ଶଢ-କସରତ-ରତ ଜୁଦ୍‌ବାହୁ ବାମନ ନେତାମାନଙ୍କୁ ଦେଖିଲେ କିଏ ବିଶ୍ୱାସ କରିପାରିବ ମଧୁ, ଗୋପବନ୍ଧୁ, ଗୋଦାବରୀଶଙ୍କ ଭଳି ଅତିକାୟ ବ୍ୟକ୍ତିମାନେ ଏ ମାଟିରେ ଦିନେ ବିଚରଣ କରୁଥିଲେ ବୋଲି।

ପ୍ରାଗୈତିହାସିକ ଯୁଗର ଡାଇନୋସର୍‌ମାନଙ୍କ ଭଳି ସ୍ୱାଧୀନୋତ୍ତର ଓଡ଼ିଶାରେ ମଧୁ, ଗୋପବନ୍ଧୁଙ୍କ ବଂଶ ପ୍ରାୟ ଲୋପ ହୋଇଯାଇଛି।



କୋରାପୁଟକୁ ଯୁଗ ଯୁଗ ଧରି ଭଲପାଇ ଆସିଥିଲେ ଯେଉଁ ବନବାସୀମାନେ, ସେମାନଙ୍କ ଶାରୀରିକ ଶୃଙ୍ଖଳିତ ଉପରେ ଘନେଇ ଉଠୁଥିଲା ସର୍ବନାଶର ମେଘ ।

ଜଙ୍ଗଲ ଥିଲା ସେମାନଙ୍କର ଖାଦ୍ୟ ଭଣ୍ଡାର । ଗୋଷ୍ଠୀଜୀବନ ଥିଲା ସେମାନଙ୍କର ସମସ୍ତ ଆନନ୍ଦ, ଉଚ୍ଛ୍ୱାସର ଗଙ୍ଗୋତ୍ରୀ ।

ଜଂଗଲ ବିଭାଗ ଓ କଣ୍ଟ୍ରାକ୍ଟରଙ୍କ ମିଳିତ ଧର୍ଷଣ ଫଳରେ ଜଂଗଲର ସ୍ତନ୍ୟରୁ ଶୁଖିଯାଉଥିଲା ଜୀବନ ଦାୟିନୀ କ୍ଷୀର ।

ଯୁଗ ଯୁଗ ଧରି ମାଟିରୁ ରସ ଓ ସୂର୍ଯ୍ୟକିରଣରୁ ଖାଦ୍ୟ ଆହରଣ କରି ଅଟଳ ମହିମାରେ ଦଣ୍ଡାୟମାନ ରହିଥିଲେ ଯେଉଁ ବନସ୍ପତିମାନେ, ସେମାନଙ୍କର ଶବକୁ ବ୍ୟବଚ୍ଛେଦ କରି ବୁହାଯାଉଥିଲେ ସହରର ପ୍ରକାଣ୍ଡ ପ୍ରକାଣ୍ଡ କରତ କଳମାନେ ।

ମହାବଳର ଦେଶୀୟ ଯେଉଁ ବନରେ ଉପୁରି ଲହଡ଼ି ସୃଷ୍ଟି କରି ଆସିଥିଲା ଯୁଗ ଯୁଗ ଧରି, ସେହି ବନଭୂମିରେ କେବଳ ଗ୍ରେଟଗ୍ରେଟ ବୁଦା ବାଉଁଶ ଆଉ କିଛି ନଥିଲା ।

ଅତି ନିବିଡ଼ ଅରଣ୍ୟରେ ମଧ୍ୟ ଟ୍ରକ୍‌ର କାନଫଟା ଶବ୍ଦ ଶୁଣିବାକୁ ମିଳୁଥିଲା ଓ ଅତି ନିର୍ଜନ ରାସ୍ତାଗୁଡ଼ିକ ମଧ୍ୟ ଅସଂଖ୍ୟ ଭାରବାହୀ ଟ୍ରକ୍‌ର ଯିବାଆସିବାରେ ଝଟାକ୍ତ ହୋଇ ଉଠିଥିଲେ ।

କୋରାପୁଟ ଜିଲ୍ଲାର ବଡ଼ ବଡ଼ ସହରରେ ଦେଖାଦେଇଥିଲେ ଯାଯାବର ବନବାସୀଦଳ । ଗୁପ୍ତୁଗଡ଼ର ବସ୍‌ଷ୍ଟାଣ୍ଡରେ ଗୋଲଗାଲ ବପୁ ଓ ଲାଲ୍ ଲାଲ୍ ଚକ୍ଷୁ ଧାରୀ ନେତା ଯେତେବେଳେ ଦରିଦ୍ରଙ୍କ ପାଇଁ ତାଙ୍କ ଦଳ କ କାର୍ଯ୍ୟକ୍ରମ ହାତକୁ ନେଇଛି, ତାର ବିସ୍ତୃତ ବିବରଣୀ ଉଚ

କଣ୍ଟରେ ବସ୍ବାନ କରୁଥିଲେ, ତହସିଲଦାରଙ୍କ ଅଫିସ୍‌ ହତାର ଆମ୍ବଗଛ-ମୂଳେ କୌଣସି ଗାଈ ପ୍ରସବବେଦନାରେ କୁନ୍ଥାଉଥିଲା ।

କାଶୀପୁର ପଞ୍ଚାୟତ ସମିତିର ଗାଁ ପରେ ଗାଁ ଜନଶୂନ ହୋଇ ଯାଇଥିଲା । ଧାଙ୍ଗ୍ରାର ଡୁଂଗଡୁଂଗା ଓ ଧାଂଡ଼ିର ଲହରିଆ ଗୀତ ଆଉ ଗାଁର ବାତାବରଣକୁ ସ୍ନିଗ୍ଧ ଓ ସଚେତନ କରୁନଥିଲା । ଜଂଗଲ ଧ୍ୱଂସ ସଂଗେ ସଂଗେ ଝରଗୁଡ଼ିକ ଶୁଖିଯାଇଥିଲା ।

'ଆପଣ ଜାଣନ୍ତି ନା ଅରୁଣାଭ ବାବୁ ! ଏଇ କୁଲିମାନଙ୍କ ମଧ୍ୟରୁ କେତେଜଣଙ୍କର ଚାଳିଶ ପଚାଶ ଏକର ଜମି ମଧ୍ୟ ରହିଛି । କେବଳ ଆଳସ୍ୟ ଯୋଗୁ ଏମାନେ ଗାଁ ଛାଡ଼ି ସହରକୁ ଚାଲି ଆସିଛନ୍ତି ।' କହିଲେ ଜଣେ ବିଶିଷ୍ଟ ବ୍ୟକ୍ତି ।

ଅରୁଣାଭର ତଣ୍ଟି ଅଠାଅଠା ହୋଇଯାଇଥିଲା । ଏତେ ବଡ଼ ସତ୍ୟର ଅପଳାପକୁ ସହ୍ୟ କରିବାକୁ ସେ ପ୍ରସ୍ତୁତ ନଥିଲା ।

'ଆପଣ ଯାଇଛନ୍ତି କେବେ କାଶୀପୁରର ସେଇ ଅଗମ୍ୟ ଅଞ୍ଚଳକୁ ଯେଉଁଠି ମଣିଷ ତାର ଶିଶୁ କନ୍ୟାକୁ ବିକି କରି ପାଥେୟ ସଂଗ୍ରହ କରିତ ରାୟଗଡ଼ ଆସିବାକୁ ? ଯଦି ନ ଯାଇଛନ୍ତି, ତେବେ ନୀରବ ରହନ୍ତୁ । ମିଥ୍ୟାର ଅବତାରଣା କରି ଏକ କର୍ମଠ ସଂପ୍ରଦାୟର ଚରିତ୍ର ଉପରେ ଅନୁଚିତ ଆକ୍ଷେପ କରନ୍ତୁ ନାହିଁ ।'

ସାମାନ୍ୟ ସମୟ ନୀରବ ରହି ଅରୁଣାଭ କହିଥିଲା, 'ମାଟି ଓ ଗଛ ସହିତ ସଂପର୍କ ଯେଉଁ ବନବାସୀକୁ ଦିଏ ସମୃଦ୍ଧି ଓ ତୃପ୍ତି, କି ଭୟାନକ ଅସହାୟତାର ସମ୍ମୁଖୀନ ହୋଇ ସେ ତ୍ୟାଗ କରେ ନିଜର ଜନ୍ମମାଟିକୁ, ତା ଆପଣ ହୃଦୟଙ୍ଗମ କରିପାରିବେ ନାହିଁ ।

'ଚାଳିଶ ପଚାଶ ଏକର ଜମିର ମାଲିକ କାହିଁକି ତାର ଜମି ତ୍ୟାଗ କରି ସହରକୁ ଆସେ, ତା ମୋର ବୁଦ୍ଧିର ଗୋଚରର ବାହାରେ ।' କାଶୀପୁରର ପରିବେଶ ସହ ଆପଣଙ୍କର ସାମାନ୍ୟତମ ସଂପର୍କ ନଥିବାରୁ ଆପଣ ସେଠାକାର ସମସ୍ତ ସମସ୍ୟାକୁ ଉପଲବ୍ଧି କରିପାରି ନାହାନ୍ତି ।

ସ୍ୱକଣ୍ଠ ପର୍ଗଣ ଏକର ଜମିର ମାଲିକ ପକ୍ଷରେ ମଧ୍ୟ ସେ ଅଞ୍ଚଳର କୃଷି ଅର୍ଥକୋଶ ନୁହେ ।'

'କେମିତି ?'

'କାଶୀପୁର ଅଞ୍ଚଳର ଅଧିକାଂଶ ଜମି ଟାଲୁ । ଏ ଅଞ୍ଚଳର ଯେଉଁଠି ଯେଉଁଠି ସମତଳ ଜମି ଅଛିଚ, ସେ ସବୁ ଜମିର ମାଲିକ ହେଉଛନ୍ତି ସାହୁକାର ଗୋଷ୍ଠୀ ।

ପଟେଚର ଟାଉ ଦେଶରେ ଥିବା ଟାଲୁ ଜମି ଅତୀତରେ ତାର ଉର୍ବରତା ରକ୍ଷା କରିପାରୁଥିଲା ପର୍ବତରେ ଥିବା ଘନ ଜଙ୍ଗଲ ଯୋଗୁଁ । ଜଙ୍ଗଲର ବନସ୍ପତି ବର୍ଜିତ ସତ୍ତ୍ୱାପର ସମୃଦ୍ଧ ମାଟି ବର୍ଷାଜଳ ସହିତ ବୋହି ଆସୁଥିଲା ଟାଲୁଜମିକୁ । ଫଳରେ ଟାଲୁଜମିରେ କୃଷି ଥିଲା ଲାଭଜନକ ।'

'ଆଉ ଏବେ ?'

'ଏବେ ଟାଲୁଜମିକୁ ଉର୍ବର କରିବାକୁ ଜଙ୍ଗଲ ପାହାଡର ସାମର୍ଥ୍ୟ ନାହିଁ । ଏଣେ ବର୍ଷ ପରେ ବର୍ଷ ଚାଷ କରିବା ଫଳରେ ଉପରର ଉର୍ବର ମୃତ୍ତିକା କ୍ରମାଗତ କ୍ଷୟର ମୂଲ୍ୟହୀନ ହୋଇଛି । ଆଜି ଏ ମାଟିରେ ଫସଲ କରି ଚାଷୀ ତାର ଖର୍ଚ୍ଚ ଉଠାଇବାର ସମ୍ଭାବନା ମଧ୍ୟ କ୍ଷୀଣ ହୋଇ ଉଠିଚି ।'

କ୍ଷୁଧା ! କ୍ଷୁଧା ହିଁ ଯୁଗେ ଯୁଗେ ମଣିଷକୁ କରିଛି ଯାଯାବର ।

ଅତୀତର ସେଇ କେଉଁ ଏକ ଇତିହାସ-ଆଲୋକ ବର୍ଜିତ ଯୁଗରେ ଦଳ ଦଳ ଯାଯାବର ଗୋପାଳକ ଚାଲି ଆସିଥିଲେ ମଧ୍ୟ-ଏସିଆରୁ ଭାରତ ବର୍ଷକୁ ।

ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଏଇ ଭାରତ ଦେଶରେ ସେମାନେ ସୃଷ୍ଟି କରିଥିଲେ ପ୍ରକାଣ୍ଡ ପ୍ରକାଣ୍ଡ ଶସ୍ୟକ୍ଷେତ୍ର ।

କ୍ଷୁଧାର ତାଡ଼ନା କାଶୀପୁରର ଅନେକ ଟିଁକୁ କରିଚି ଜନଶୂନ୍ୟ । ସହରରେ ଶସ୍ତା ମୂଲଆର ଆବଶ୍ୟକତା ପୂରଣ କରିଛନ୍ତି କାଶୀପୁରରୁ ଦଳ ପରେ ଦଳ ଆଗତ ବନବାସୀମାନେ ।

ଯେଉଁ ପ୍ରକ୍ରିୟା ଲକ୍ଷ ଚମ୍ପା ଓ ଘିଅ ଦୁଧର ଦେଶ କାଶୀପୁରକୁ ଅନାହାରତା ଓ ଦାରିଦ୍ର୍ୟର ଆବର୍ତ୍ତ ମଧ୍ୟକୁ ଠେଲି ଦେଇଛି, ସେହି ପ୍ରକ୍ରିୟାର ପୁନରାବୃତ୍ତି ଘଟିଛି କୋରାପୁଟ ଓ କଳାହାଣ୍ଡିର ବହୁ ଅଞ୍ଚଳରେ ।

ଜନଶୂନ୍ୟ ଓ ଭଗ୍ନସ୍ତୂପପୂର୍ଣ୍ଣ ଗ୍ରାମ ଓ ଶୋଷଣର ଚରାଭୂଇଁ ଜନ-ବହୁଳ ସହର ବୋଧହୁଏ କୋରାପୁଟ ଓ କଳାହାଣ୍ଡିର ଭବିଷ୍ୟତ ।

ଗୋଟିଏ ଛେଳି, ଗୋଟିଏ କୁକୁଡ଼ା କିମ୍ବା ବ୍ୟାଙ୍କରୁ କିଛି ଋଣର ବ୍ୟବସ୍ଥା କରି ନିଜକୁ କୃତକୃତ୍ୟ ମନେ କରୁଛନ୍ତି ଯେଉଁ ଆଦିବାସୀ ମନ୍ତ୍ରୀ କିମ୍ବା ଏମ୍. ଏଲ୍. ଏ ମାନେ, ସେମାନେ ସମସ୍ତେ ଶୋଷଣ ଯନ୍ତ୍ରର ଗୋଟିଏ ଗୋଟିଏ ଚକମାତ୍ର ।

ଗ୍ରାହକବାଦ ଉପରେ ପ୍ରତିଷ୍ଠିତ ଏକ ପତନଶୀଳ ସଂସ୍କୃତିକୁ ଏକ ସୁସ୍ଥ ସଂସ୍କୃତି ଉପରେ ଆରୋପ କରି ଭାରତର ଯୋଜନା କର୍ତ୍ତାମାନେ ଧ୍ୱଂସ କରି ଦେଇଛନ୍ତି ଏକ ସୁଖୀ, ସମୃଦ୍ଧ ଜନଗୋଷ୍ଠୀକୁ ।

ବିଂଶ ଶତାବ୍ଦୀର ଭାରତରେ ଗାନ୍ଧିଜୀଙ୍କର ଏକାଦଶ ବ୍ରତ ମଧ୍ୟରେ ଏକ ପ୍ରଧାନ ସ୍ଥାନ ମିଳିଥିଲା 'ଅପରିଗ୍ରହ'କୁ ।

ଆସନ୍ତାକାଲିର ଚିନ୍ତାରେ ବ୍ୟାକୁଳ ହେବା ଆଦିବାସୀ ଚରିତ୍ରର ବୈଶିଷ୍ଟ୍ୟ ନୁହେ । ତତ୍କାଳୀନ ଜୀବନକୁ ଉପଭୋଗ କରି ଆଦିବାସୀ ସନ୍ତୋଷ ଲାଭ କରିଥାଏ ।

ଆଦିବାସୀର ଗୋଷ୍ଠୀଜୀବନ, ଆଦିବାସୀ ସମାଜରେ ସ୍ତ୍ରୀର ସ୍ୱାତନ୍ତ୍ର୍ୟ; ଏ ସମସ୍ତ ଆମର ଭୋଗବାଦୀ ସଂସ୍କୃତିଠାରୁ ଆଶା କରାଯାଇ-ପାରେନା ।

ଅର୍ଥର ପ୍ରଲୋଭନ ଓ ବନ୍ଧୁକ ମୁନ ବଳରେ ଭାରତୀୟ ସମାଜକୁ ଥରେ ବାଧ୍ୟ କରାଯାଇଥିଲା ପାଶ୍ଚାତ୍ୟ ସଂସ୍କୃତିକୁ ନିଜସ୍ୱ କରିନେବା-ଲାଗି । ସ୍ୱାଧୀନୋତ୍ତର ଭାରତରେ ମଧ୍ୟ ଯୋଜନାବାଦୀଙ୍କ ଭୁଲ୍ ବାଟର

ଫଳରେ ଏକ କୃଷିଭିତ୍ତିକ ଗଣତାନ୍ତ୍ରିକ ସମାଜ ଉପରେ ଜବରଦସ୍ତ ଆରୋପିତ ହୋଇଗଲା ଏକ ବ୍ୟକ୍ତି କେନ୍ଦ୍ରିକ ଶୈଳ୍ପିକ ସମାଜ ।

ବହୁବର୍ଷର ଯୋଜନା ଏକ ସ୍ୱାଭିମାନ ସମ୍ପନ୍ନ ସମ୍ପ୍ରଦାୟକୁ ପରିଣତ କରି ଦେଇଛି ଭିକ୍ଷୁକ ଶ୍ରେଣୀରେ ।

ନିଜ ଶ୍ରେଣୀ ତ୍ୟାଗ କରିଥିବା ଆଦିବାସୀ ନେତା ଓ ଏମ୍ ଏଲ୍ ଏ ମାନେ ଆଦିବାସୀର ସ୍ୱାଭିମାନକୁ ଧ୍ୱଂସ କରିବାବାଟରେ ପ୍ରମୁଖ ଅଂଶ ଗ୍ରହଣ କରିଛନ୍ତି ।

ଅରୁଣାଭର ମାନସିକ ଦିଗ୍‌ବଳୟରେ ଭାସି ଉଠିଲା ଗୋଟିଏ କର୍ଷଣ ମୁଖର ଗୀତର ସିଲ୍‌ହଟ୍ । ସେଦିନ ଅରୁଣାଭ ସହିତ ଆଲୋଚନାରେ ମଗ୍ନଥିଲେ ସପ୍ତଗଡ ପୋଲମ୍ ବାସ୍ତୁମାନଙ୍କ ସବୋଚକର୍ତ୍ତା ।

ଭାରତର ଶାଣକର୍ତ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଆଗମନ ଉପଲକ୍ଷରେ ଅଶାନ୍ତ ହୋଇଉଠିଲା କୋରାପୁଟ ଜିଲ୍ଲା । ଅମାପ କ୍ଷମତାଧାରୀ ଏ ମନ୍ତ୍ରୀଙ୍କୁ ସ୍ୱାଗତ ଜଣାଇବା ପାଇଁ ଶାସନକଳ ରାସ୍ତାକଡ଼ରେ ବସ୍ତୁତ ଦେଲା ଲକ୍ଷ ଲକ୍ଷ ଟଙ୍କା । ମାତ୍ର ଘଣ୍ଟାଏ ଦୁଇଘଣ୍ଟା ମନ୍ତ୍ରପୂଷୀ ନେତ୍ରୀଙ୍କ ସ୍ପର୍ଶ ଲାଭ କରିବବୋଲି ଚଷମ ଜଟକ ଡାକ ବଙ୍ଗଳା ଗାଁକୁ ସୁଂଗାରିତ କରାଗଲା ବହୁମୂଲ୍ୟ ଆରାମଦାୟକ ବ୍ୟବସ୍ଥାଗୁଡ଼ିକର ଆୟୋଜନ କରି ।

ହାଣ୍ଡିଏ ପାଣୀୟ ଜଳ ପାଇଁ ଯେଉଁ ଅଞ୍ଚଳର ସାଧାରଣ ନାରୀ ପାଞ୍ଚ ରୁ' କିଲୋମିଟର ରାସ୍ତା ଅତିକ୍ରମ କରେ, ସେ ଦେଶରେ ତ୍ୟାଗର-ବ୍ରତକୁ ଜୀବନର ଅଙ୍ଗରୂପେ ବରିନେଇଥିବା ଏକ ପରିବାରର କନ୍ୟାର ବିଳାସ ପାଇଁ ରାଜକୋଷକୁ ରିକ୍ତ କରି ଦିଆଯାଏ ।

ଢଟମକଟଙ୍କ ଆଗମନର କ'ଣ ଆବଶ୍ୟକତା ଅନୁଭବ କରିଥିଲେ ଭାରତର ଜନପ୍ରିୟ ନେତ୍ରୀ ?

ଅଜସ୍ର ଅର୍ଥ ଶ୍ରାଦ୍ଧଦେବା ବ୍ୟତୀତ ଅନ୍ୟ କୌଣସି ହିତପୂ ପରିଣାମକୁ ପ୍ରସବ କରିପାରି ନଥିଲା ତାଙ୍କର ଏହି ମହାର୍ଘ୍ୟ ଗସ୍ତ ।

ଦେଶଗାନ୍ଧୀଙ୍କ ବିଦାୟ ପରେ ଗାନ୍ଧୀବାଦୀ ମୋହରଙ୍ଗା ଦେଶଭକ୍ତଙ୍କ ଅମଳରେ ମଧ୍ୟ ଜାରୀ ରହିଲା ସେହି ନାଚ ବନ୍ଧୁକ କାର୍ଯ୍ୟକ୍ରମ ।

ବିଷମକଟକ ସହରର ଅନ୍ୟତମ କାର୍ଯ୍ୟକ୍ରମ ଥିଲା ଡୋଙ୍ଗରି-କନ୍ଧଙ୍କୁ ପଟ୍ଟା ପ୍ରଦାନ । ବୃଷ୍ଟିକଣା ରେଲଓ୍ୱେ ଷ୍ଟେସନ୍‌ର ଅନତି ଦୂରରେ ଦଣ୍ଡାୟମାନ ଥିଲା ନିୟମଗିରି ।

ବୃକ୍ଷ ସ୍କନ୍ଧ, ଶାଳଭୂକ ଡୋଙ୍ଗର କନ୍ଧର ଜନ୍ମଭୂମି ନିୟମଗିରିର ତଳୁରେ ମନଲୋଭା ଶୋଭାର ଜନପୂର୍ଣୀ ଥିଲା ଅସଂଖ୍ୟ କଦଳୀ, କମଳା ଓ ପଣସର ଉଦ୍ୟାନ ।

ଶୋଷଣର ଚକ୍ରଭୂଇଁ ନିୟମଗିରି ଅଞ୍ଚଳରେ ଦେବଦୂତ ଭଳି ହଠାତ୍ ଆବିର୍ଭୂତ ହୋଇଥିଲେ ପ୍ରଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତି । ତାଙ୍କର ବଳିଷ୍ଠ ହସ୍ତକ୍ଷେପ ଓ ଏମ୍. ଡ଼. ଓ କ୍ଷମତାର ମିଳନ ଶୁଭଙ୍କର ପ୍ରମାଣିତ ହୋଇଥିଲା ଡୋଙ୍ଗର କନ୍ଧ ପକ୍ଷରେ । ସୀମାହୀନ ଶୋଷଣକୁ ପ୍ରଥମ ପ୍ରଚଣ୍ଡ ଧକ୍କା ଦିଆଯାଇପାରିଥିଲା କେବଳ ତାଙ୍କର ଅନଳସ କାର୍ଯ୍ୟକଳାପ ଯୋଗୁଁ ।

ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଏବେ ବି ମନେ ପକାନ୍ତି ନେହେରୁ ଯୁଗର ଆଦିବାସୀ ନେତାମାନେ । ରାମାୟଣ ଯୁଗର ଶବରୀଫଳ ଭକ୍ଷକ ରାମଚନ୍ଦ୍ରଙ୍କର ମୂର୍ତ୍ତି ଉଦ୍ରେକ କରାଇ ଥିଏ ନବବାବୁଙ୍କ ଡୋଙ୍ଗରକନ୍ଧର ଗ୍ରାମରେ ଅକୁଣ୍ଠିତ ଆତିଥ୍ୟ ଗ୍ରହଣ । ଡୋଙ୍ଗରକନ୍ଧର ସଶ୍ରଦ୍ଧ ଉପାୟନ ଗିଲାସେ ଅପରିଷ୍କାର ସଲପରସକୁ ଢ଼କ ଢ଼କ କରି ପିଇଲାବେଳେ ଅବାକ୍ ବିସ୍ମୟରେ ମୁଖ୍ୟମନ୍ତ୍ରୀଙ୍କୁ ନିରୀକ୍ଷଣ କରି ଲାଗିଥିଲେ ଅଫିସର ଓ ଏମ୍. ଏଲ୍. ଏ ଗୋଷ୍ଠୀ । ବାହୁଡ଼ା ଯାତ୍ରା-ବେଳେ ନିର୍ଭେଜାଲ ଗାନ୍ଧୀ ଚେଲା ନବବାବୁ କହିଥିଲେ, 'ତାର ଛଳଛଳ ନୟନରେ ମୁଁ ଯେଉଁ ଆଗ୍ରହର କମନୀୟ ରୂପ ଦେଖିଲି ତାହା ମୋ ମନର ସମସ୍ତ ବାଧା ବନ୍ଧନକୁ ଚୂରମାର କରିଦେଲା ।' ସେ ଥିଲା ଅନ୍ୟ ଏକ ଯୁଗର ଅନ୍ୟ ଏକ ଭାରତ ।

ବିଷମକଣ୍ଟକ ସଭାର ରଙ୍ଗମଞ୍ଚରେ ଆସନ ଦଖଲ କଲେ ଭାରତର ସବୁଠାରୁ ଶକ୍ତିଶାଳୀ ମହିଳା । ଗୋଟିଏ ପରେ ଗୋଟିଏ କାର୍ଯ୍ୟକ୍ରମରେ ବ୍ୟସ୍ତ ରହିଲେ ଅନୁଗତ ମନ୍ତ୍ରୀ ଓ ଅଫିସର୍ ଗୋଷ୍ଠୀ ।

ପ୍ରଧାନମନ୍ତ୍ରୀଙ୍କ ଡ଼ାଏସ୍‌ର ଅନତି ଦୂରରେ ଅଭିନୀତ ହେଉଥିଲା ଏକ ହାସ୍ୟକର ନାଟକ । ସାଧାରଣ ଲୋକ ଯେଉଁ ଶକ୍ତିଶାଳୀ ଅଫିସରଙ୍କ ସହ ସାକ୍ଷାତ ପାଇଁ ଦିନପରେ ଦିନ ଅପେକ୍ଷା କରି ସମସ୍ତଙ୍କୁ ପାଣିଚର ଛେଁ କରିଥାନ୍ତି, ସେମାନଙ୍କର ଏକ ବୃହତ୍ ଗୋଷ୍ଠୀର ଆକୁଳ ଅନୁରୋଧକୁ କୃଦ୍ଧ ବାଣୀରେ ପ୍ରତ୍ୟାଖ୍ୟାନ କରି ସେମାନଙ୍କୁ ପଛକୁ ଠେଲି ନେଉଥିଲେ କେତେଜଣ ଲଗୁଡ଼ହସ୍ତ କନ୍‌ଷ୍ଟେବଲ୍ । ପ୍ରଧାନମନ୍ତ୍ରୀଙ୍କ ସାନ୍ନିଧ୍ୟରେ ଏକ ଫଟୋ ଉଠାଇବା ଲାଳସା ନେଇ ସେମାନେ ଖୋସାମୋଦ୍ କରି ବୁଲୁଥାନ୍ତି ସେମାନଙ୍କ ଦରମାର ଏକ ଦଶମାଂଶ ଦରମା ବି ପାଉନଥିବା ସେହି କନ୍‌ଷ୍ଟେବଲ୍‌ମାନଙ୍କୁ ।

ସଭାସ୍ଥଳର ଅନ୍ୟ ଏକ ଅଙ୍ଗନରେ ଅଭିନୀତ ହେଉଥାଏ ନାଟକର ଅନ୍ୟ ଏକ ଦୃଶ୍ୟ । ଗଜପାପୁ ଠାଣିରୁ ସେଠାରେ ତଣ୍ଡାପୁମାନ ଥାଆନ୍ତି କେତେଜଣ ଡୋଙ୍ଗର କନ୍ଧ । ସେମାନଙ୍କର ସ୍କନ୍ଧରେ ବିରାଜମାନ କରୁଥାଏ ଶାଣିତ କୁଠାର ।

ପ୍ରାଦେଶିକ ସ୍ତରର କେତେଜଣ ଅଫିସର୍ ଅନୁରୋଧ କରୁଥାନ୍ତି ସେଇ ଡୋଙ୍ଗର କନ୍ଧଙ୍କୁ ପ୍ରଧାନମନ୍ତ୍ରୀଙ୍କ ସମକ୍ଷକୁ ଯାଇ ଚଢ଼ାଆଣିବା ଲାଗି କାରଣ ପଟ୍ଟାବଣ୍ଟନ କାର୍ଯ୍ୟକ୍ରମର ମୁହୂର୍ତ୍ତ ଆସନ୍ନ ହୋଇ ଆସୁଥାଏ ।

ବେପରୁଆ ଭାବରେ ଜଣେ ଟାଙ୍ଗିଆଧାରୀ ଡୋଙ୍ଗର କନ୍ଧ ଉତ୍ତର ଦେଲା, 'ହଁ, ମୁଁ ଯିବି ।'

ଅଫିସର୍ କହିଲେ, 'ମାତ୍ର ଏ ଟାଙ୍ଗିଆ ତୁ ନେଇପାରିବୁ ନାହିଁ ।'

କନ୍ଧ କହିଲା, 'ଏ ଟାଙ୍ଗିଆକୁ ମୁଁ ଛାଡ଼ିପାରିବି ନାହିଁ ।'

'ତାହେଲେ ତୁ ପ୍ରଧାନମନ୍ତ୍ରୀଙ୍କୁ ଭେଟି ପାରିବୁ ନାହିଁ ।'

'ମୋର ତାଙ୍କୁ ଭେଟିବା ଦରକାର ନାହିଁ ।'

'ଆରେ, ତୁ ପରା ତାଙ୍କ ହାତରୁ ଜମିର ପଟ୍ଟା ପାଇବୁ ।'

'ମୋର ଜମି ପଟ୍ଟା ଦରକାର ନାହିଁ ।'

ଅଫିସର୍ଙ୍କ ମୁହଁ ଓ ଦେହଯାକ ଭିଜି ହୋଇଗଲା ଟିପିଟିପି ଝାଳ ବୁନ୍ଦ୍ । ହୃତ୍ପିଣ୍ଡର ସ୍ପନ୍ଦନ ବଢ଼ିଗଲା ଅତ୍ୟନ୍ତ ଦ୍ରୁତ ବେଗରେ ।

ବହୁ ସଂଖ୍ୟକ ଅଫିସର୍ଙ୍କ ଅନୁରୋଧ ଓ ଆବେଦନ ପରେ ଦୟା ପରବଶ କରି ଟାଙ୍ଗିଆଟି ଜଣେ ଭୁଙ୍ଗ ଅଫିସର୍ଙ୍କ ହାତରେ ଦେଇ ତାଙ୍କୁ କହିଲା, 'ମୁଁ ଆସିବା ପର୍ଯ୍ୟନ୍ତ ଏ ଟାଙ୍ଗିଆ ଧରି ତୁ ଏଇଠି ଠିଆ ହୋଇ-ଥିବୁ । ଆଉ କୁଆଡ଼େ ଯିବୁନି ।'

କୃତଜ୍ଞତାରେ ଆଖି ଛଳ ଛଳ ହୋଇ ଆସିଲା ପ୍ରାଦେଶିକ ସ୍ତରର ଅଫିସର୍ଙ୍କର ।

ମହ୍ୟଯନ୍ତ୍ରଯୁକ୍ତ ମଞ୍ଚକୁ ଅର୍ଜୁନ ଝଟିଲାଭଳି ଧୀର ପଦକ୍ଷେପରେ ମଞ୍ଚ ଉପରକୁ ଯାଇ ଇନ୍ଦିରାଗାନ୍ଧୀଙ୍କ ହାତରୁ ପଟ୍ଟା ଗ୍ରହଣ କରିଥିଲା ସେହି ଡ଼ୋଙ୍ଗରିଆ କନ୍ଧ ଜଣକ ।

ଆଦିବାସୀର ସ୍ୱାଭିମାନ, ଯାହା ତା ଚରିତ୍ରର ସର୍ବଶ୍ରେଷ୍ଠ ବୈଶିଷ୍ଟ୍ୟ, ଧୀରେ ଧୀରେ ଧ୍ୱଂସ ପଥରେ ନେଇ ଯାଉଛନ୍ତି ମନ୍ତ୍ରୀ ଏମ୍. ଏଲ୍. ଏ ମାନେ । ଏକ ଅଭିଜ୍ଞମଯୁକ୍ତ ବୀର ସମ୍ପ୍ରଦାୟକୁ ଭିକାରୀ ସଜାଇପାରିଲେ ସତେ ଯେମିତି ସେମାନଙ୍କ ଅଭିଯାନର ଅବସାନ ହେବ କାରଣ ସେଭଳି ଘଟିପାରିଲେ ଅସଦୁପାୟରେ ଅର୍ଜିତ ଅମାପ ଅର୍ଥର କିୟଦଂଶ ବିନିଯୋଗ କରି ସେମାନେ ଆଦିବାସୀମାନଙ୍କର ଭୋଟ କିଣି-ନେବେ ।



ଜୟା ନାଇଡୁ ।

ସ୍ୱାଧୀନତା ସଂଗ୍ରାମରେ ଜେଲ୍‌ରେ ଦେହତ୍ୟାଗ କରିଥିବା ପିତାର ଏକମାତ୍ର କନ୍ୟା ଜୟା ।

କଳା ଦେହର ସୁଠାମ ଦେହ ଓ ବୁଦ୍ଧିଦୀପ୍ତ ଉଜ୍ଜ୍ୱଳ ସ୍ୱଭାବୀର ମାଳିତ ଏଇ ଝିଅଟିର ସ୍ୱାଭାବିକ ବୈଶିଷ୍ଟ୍ୟ ଥିଲା ଏକ ଅନନ୍ୟସୁ ଭଦ୍ରତା ।

ଖିନ୍ନ କପୋତ ଭଳି ଅସହାୟ ମାଆର ଏକମାତ୍ର କନ୍ୟା ଜୟାକୁ ନେଇ ମାଆର ଚଳାର ଝିଅ ଲମ୍ବି ଲମ୍ବି ଯାଏ ଦୂରରୁ ଦୂରକୁ ।

ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ରୀ ଏଇ ଝିଅଟି ଟିଉସନ୍ କରି ଯୋଗାଡ଼ କରେ ମା'ପାଇଁ ଓ ତା'ପାଇଁ ପାଥେୟ । ଶ୍ରେଷ୍ଠବେଳେ ମନ୍ତ୍ରୀ ଓ ନେତାମାନେ ବହୁବାର ଏଇ ଦରିଦ୍ର ପରିବାରର ଦାୟିତ୍ୱ ନେଉଛନ୍ତି ।

ଝରଣ ଜଙ୍ଗଲ ଘେରା ଆଦିବାସୀ ପଲ୍ଲୀରେ ଏବେ ବି ଆଦିବାସୀ [illegible]ରେ ଜୟା ନାଇଡୁର ପିତା ବମ୍ପଡୁଙ୍କୁ । ଅର୍ଥର ପ୍ରଲୋଭନ ଶ୍ରେଷ୍ଠ ରଣାଙ୍ଗନରେ ଉନ୍ମୋଚ କରଇପାରିନି ଜୟାକୁ କମ୍ପା ତାର ମାଆକୁ । ଜୟା ଅନନ୍ୟା ।

ଚମ୍ପା କଳ ଶ୍ରୀଶ୍ରୀଶଙ୍କର ଅକୃତ୍ରିମ ଭକ୍ତ ଜୟା

ଆବେଗଭରା କଣ୍ଠରେ ସେ ଗାଏ

ଡାକେ, ବାରମ୍ବାର ଡାକେ ଆଜ ଏକ ଚମତ୍କାର ଦୁନିଆ । ଆସ, ଆସ, ଆଗେଇଯିବା ।

‘ମାଗେପ୍ରଚଞ୍ଚମ୍ ମାବେହୁଚଞ୍ଚମ୍ ମାରେ ହୁଚଞ୍ଚମ୍ ପିଲଟେ
ପାଦାଣ୍ଡି, ମୁନ୍ଦକୁ, ପାଦାଣ୍ଡି ଷୋସୁକୁ, ପୋଦାଂ ପୋଦଂ ପେଡେକା’

ଜପ୍ପାର ଗଳାରେ ନାଇଟିଙ୍ଗେଲ୍‌ର ଆବାଜ । ମହତ୍ୱାକାଂକ୍ଷୀର ବିଭିନ୍ନ ଉତ୍ସବରେ ଗୀତ ଗାଇବାପାଇଁ ଜପ୍ପା ଠିଆ ନହେଲେ ଉତ୍ସବ ଅସମ୍ପୂର୍ଣ୍ଣ ଜଣାପଡ଼େ ।

ସନ୍ଧ୍ୟା ଛଅଟାବେଳେ ଜପ୍ପା ମହନ୍ତି କମନ୍ ରୁମ୍‌ରୁ ଘରକୁ ଯିବାପାଇଁ ଗୋଡ଼ କାଢ଼ିଛି, ହଠାତ୍ ତା'ର ଦେଖା ହୋଇଗଲା ତରଙ୍ଗିଣୀ ସହିତ ।

'ଶୁଣିଲୁଣି, ଅରୁଣାଭ ଦାସ୍‌ଙ୍କ ବିରୁଦ୍ଧରେ କାଲି ଛାତ୍ରମାନଙ୍କର ମିଟିଂ ହେଉଛି ।'

'ଜାଣିଛି, ସେ କ'ଣ ଦୋଷ କଲେ କି ?'

'ସେ କଥା ମୁଁ କହିପାରିବିନି । ମିଟିଂରେ ତୁ ଯୋଗ ଦେବୁତ ?'

'ନିଶ୍ଚୟ ଯୋଗ ଦେବି । ତୁ ଯୋଗ ଦେବୁତ ?'

'ମୁଁ ବାପାଙ୍କୁ ପଚାରି ଠିକ୍ କରିବି ।'

ସେ ରାତି ଥିଲା ସହରର ଏକ କୋଳାହଳ ମୁଖରିତ ରାତି । କ୍ଷମତାସୀନ ରାଜନୈତିକ ଦଳର ଯୁବ ଛାତ୍ରନେତାମାନେ ସିଦ୍ଧାନ୍ତ ନେଇଥିଲେ ସେମାନେ ଅରୁଣାଭଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବେ ।

ରାୟଗଡ଼ର ରାଜନୈତିକ ଦଳଙ୍କ ପକ୍ଷରେ ଅରୁଣାଭ ଥିଲା ଏକ ଦୁଷ୍ଟ ଗ୍ରହ । ସେମାନଙ୍କର ନୀତିହୀନ କାର୍ଯ୍ୟକଳାପର ଆବରଣ ଅପସାରଣ କରିବାଲାଗି ସେ ଯେ କୌଣସି ପରିସ୍ଥିତିର ସୁଯୋଗ ନେବାକୁ ଭୁଲୁ ନ ଥିଲା । ସମସ୍ତ ପ୍ରକାର ଜନବିରୋଧୀ ଦଳେ, ସ୍ୱାର୍ଥପର ଓ ନୀତିହୀନ ରାଜନୈତିକ ଦଳମାନଙ୍କର ଅଙ୍କୁଶ ରୂପେ କାମ କରିବାକୁ, ଏକ ନିର୍ଦ୍ଦଳୀୟ ଗଣତାନ୍ତ୍ରିକ ଚେତନା ବିଶିଷ୍ଟ ଏକ ଶକ୍ତିଶାଳୀ ଗୋଷ୍ଠୀ ରାୟଗଡ଼ରେ ସୃଷ୍ଟି କରିବା ଥିଲା, ତାର ଚରମ ଲକ୍ଷ୍ୟ ।

ଜନତାର ଅର୍ଥ ବିଭିନ୍ନ ଉପାୟରେ ଲୁଣ୍ଠନ କରି ଯେଉଁମାନେ କ୍ରମାଗତ ଭାବରେ ଚର୍ବି ବଢ଼ାଇଥିଲେ, ସେମାନଙ୍କ ପକ୍ଷରେ ଅରୁଣାଭ

ଥିଲା ଏକ ଆତଙ୍କ, ଏକ ଧୂମକେତୁ । ସେମାନଙ୍କର ଏକ ଅଲିଖିତ ଚୁକ୍ତି ଅନୁଯାୟୀ ଶାସକଦଳର ସମର୍ଥିତ ଛାତ୍ରନେତାମାନେ ଅରୁଣାଭଙ୍କୁ ଜବତ୍ କରିବା ଲାଗି ଏକ ଯୋଜନା କରିଥିଲେ ।

ଗର୍ତ୍ତର ଧର୍ମଘଟଟାକୁ ଉପହାସ କରି ବିଦେଶୀ ମଦ ଦୋକାନ ଆଗରେ ଛାତ୍ରନେତା ଓ କଲେଜ ଦାଦାମାନଙ୍କର କୋଳାହଳ ପ୍ରଭୃତି ବୃଦ୍ଧି ପାଇଥିଲା । ରମ୍ ଓ ଆଲକୋହଲର ଟିକିଏ ଧାରଣଂ ଶ୍ଳେ ନେଇ ସହରର କାନ୍ଥବାଡ଼ର ଶାନ୍ତି ଭଙ୍ଗ କରିବାକୁ ସେ ରାତ୍ରିର ଶପଥ ନେଇଥିଲେ ।

ଶରତର ନିର୍ମେଘ ସକାଳଟି ଆସିଲା ରାୟଗଡ଼ ସହରରେ ପ୍ରବଳ ଉତ୍ତେଜନାର ଢେଉ ସୃଷ୍ଟି କରି ।

ସହରର କାନ୍ଥବାଡ଼ ଭରିଯାଇଥିଲା ଅଧ୍ୟାପକ ଅରୁଣାଭଙ୍କ ବିରୋଧୀ ସ୍ଲୋଗାନ୍‌ରେ । ସେ ମଧ୍ୟରୁ ଦୁଇଟି ପ୍ରଧାନ ସ୍ଲୋଗାନ୍ ଥିଲା । 'ବଜମାଷ୍ଟକେର୍ ଅଧ୍ୟାପକ ଅରୁଣାଭଙ୍କୁ ବହିଷ୍କୃତ କର ।' 'ଅଧ୍ୟାପକ ଅରୁଣାଭ ମହାବିଦ୍ୟାଳୟର କଳଙ୍କ ।'

ପୂର୍ବାହ୍ନ ଏଗାରଟା ସମୟରେ ଶ୍ରେଣୀ ଛାଡ଼ିଆସିଲେ ଅଧିକାଂଶ ଛାତ୍ରଛାତ୍ରୀ । ଯେଉଁ ମୁଷ୍ଟିମେୟ ଛାତ୍ରଛାତ୍ରୀ ସାଙ୍ଗମାନଙ୍କ ଡାକରା ନେବାର ଦୁଃସାହସ କରିଥିଲେ, ସେମାନଙ୍କୁ ଦାଦାମାନେ ନାଲି ଆଖି ଦେଖାଇ ଟାଣି ଆଣିଲେ ବାହାରକୁ ।

ଅଧ୍ୟାପକ ଗୋଷ୍ଠୀ ଅରୁଣାଭଙ୍କ ବିଷୟ ନେଇ ଦୁଇଭାଗ ହୋଇ ଯାଇଥିଲେ । ବିଭିନ୍ନ ପରିସ୍ଥିତିରେ ଅରୁଣାଭଙ୍କ ଅନମନୀୟତା ଏକ ବୃହତ୍ ଅଧ୍ୟାପକ ଗୋଷ୍ଠୀପାଇଁ ବିରକ୍ତିର ଧୃଷ୍ଟଶାଳା ଥିଲା ।

କମନ୍‌ରୁମ୍ ଆଲୋଚନାରେ ସରଗରମ ହୋଇ ଉଠିଥିଲା । କମର୍ଷ ଅଧ୍ୟାପକ ଦଣ୍ଡସେନା ଉତ୍ତେଜିତ ସ୍ୱରରେ ହାତ ହଲାଇ କହୁଥିଲେ, 'ଲୋକଟାତ ମଣିଷ ନୁହେଁ, ଗୋଟାଏ ପଥର, ଗ୍ରାନାଇଟ୍ ପଥର । ମୋ ଭାଇର ପରୀକ୍ଷା ଖାତା ଗତ ବର୍ଷ ସେ ପାଇଥିଲା । ମୁଁ କେବଳ ନୁହେ ମୋ ପାଇଁ ଛ ଜଣ ଅଧ୍ୟାପକ ଅନୁରୋଧ ଜଣାଇଲେ । ତଥାପି ପଥର

ଛଉନଲା ନାହିଁ । ଏଥର ଭଦ୍ରଲୋକ ବୁଝନ୍ତୁ ଗୋଠ ଖଣ୍ଡିଆ ହେଲେକ ଅସୁବିଧା ଭୋଗକରିବାକୁ ପଡ଼େ ।'

ଅଧ୍ୟାପକ ମିଃ ଆଚାର୍ଯ୍ୟ କହିଲେ, 'ଛାତ୍ରମାନଙ୍କର ଏପରି କାର୍ଯ୍ୟକଳାପର ପ୍ରତିରୋଧ ହେବା ଦରକାର । ଆଜି ସେମାନେ ଅରୁଣାଭଙ୍କ ଚରିତ୍ରରେ ମାତିଛନ୍ତି, କାଲି—'

'ଆମ ଚରିତ୍ରରେ ମାତିଯାଉନ୍ତୁ । ତେଣୁ ଆମେ ସତର୍କ ରହିବା ସୁବିଧାଜନକ ହବ ।' କହିଲେ ମିଃ ପଟ୍ଟନାୟକ ।

'ବେଶି କୁହେ, ମାତ୍ର ଦଶଟି ମାର୍କ ବଢ଼ାଇବା ପାଇଁ ଆମେ ସମସ୍ତେ କହିଲୁ ।' କହିଲେ ମିଃ ଦଣ୍ଡସେନା । ଗଣିତ ଅଧ୍ୟାପକ ମିଃ ଚୌଧୁରୀ କହିଲେ, 'ଆପଣଙ୍କୁ ଅରୁଣାଭ କହିଥିଲେ 'କୌଣସି ଅଧ୍ୟାପକର ଝିଅ ବୋଲି, କୌଣସି ମନ୍ତ୍ରୀର ସମ୍ବନ୍ଧୀ ବୋଲି, କୌଣସି ବ୍ୟବସାୟୀର କୁଳନନ୍ଦନ ବୋଲି ମୁଁ ଯଦି କେତେକ ଛାତ୍ରଙ୍କୁ ଅଧିକ ନମ୍ବର ଦେବି, ତେବେ ମୁଁ ଭଗବାନଙ୍କ ଦରବାରରେ ଅପରାଧୀ ବିବେଚିତ ହେବିନି କି ?

ବର୍ତ୍ତମାନ ମିଷ୍ଟର ଅରୁଣାଭ ନିଜ ସମସ୍ୟାର ସମାଧାନ ନିଜେ କରନ୍ତୁ ।"

ଛାତ୍ରସଙ୍ଘ ଓ କମନ୍‌ରୁମ୍‌ର ଗରମାଗରମ ଆଲୋଚନାର ଯେ ନାୟକ ଥିଲେ, ସେ ସେତେବେଳକୁ ଏକ ନିର୍ଜନ କୋଠରୀରେ ଆବୃତ୍ତି କରୁଥିଲେ କବି ୟେଟ୍‌ସ୍‌ଙ୍କ କବିତା।

For, being honour-bred
How can you compite with one
Who, were it proved he lies
were neither shamed in his own
Nor in his neighbour's eyes ?

ସମ୍ମାନରେ ତୁମର ଜନ୍ମ ଆଉ ଲାଳନ ପାଳନ
ତୁମେ କେମିତି ପ୍ରତିଯୋଗିତା କରିପାରିବ

ସେଇମାନଙ୍କ ସହ,
ଯେଉଁମାନେ 'ମିଥ୍ୟାବାଦୀ' ପ୍ରମାଣିତ ହେଲେ
ସେମାନଙ୍କର କମ୍ବା ସେମାନଙ୍କର ପଡ଼ୋଶୀମାନଙ୍କ ଚକ୍ଷୁରେ
ଲଜ୍ଜା ଫୁଟି ଉଠେ ନାହିଁ ।

ତୁମ ସଭାରେ ଭାଷଣର ଗରମାଗରମ କଥ ଶ୍ରୋତାମାନେ ଟପାଟପ୍ ଗିଳି ଚାଲିଥିଲେ । ମହାଭାରତ ଯୁଦ୍ଧର ଫାଲ୍‌ଗୁନଙ୍କ ଭଳି ବକ୍ତାପରେ ବକ୍ତା ଓଜସ୍ୱିନୀ ଭାଷାର ଧନୁ ବ୍ୟବହାର କରି କିନାର ଶର ବୃଷ୍ଟି କରିବାକୁ ଲାଗିଲେ ଅଧ୍ୟାପକ ଅରୁଣାଭଙ୍କ ଉପରେ । ଫଳରେ କରତାଳି ଧ୍ୱନି ମହାବିଦ୍ୟାଳୟର ବାୟୁମଣ୍ଡଳକୁ ବାରମ୍ବାର ଶବ୍ଦାୟିତ କରିବାକୁ ଲାଗିଲା ।

ସାତଜଣ ବକ୍ତାଙ୍କ ଗର୍ଜନଶୀଳ ଭାଷଣ ପରେ ଯେତେବେଳେ ଦେଖାଗଲା କୁମାରୀ ଜୟା ନାଇଡୁ ଭାଷଣ ମଞ୍ଚ ଉପରେ ଦଣ୍ଡାୟମାନ ରହୁଛନ୍ତି, ସଭାସ୍ଥଳରେ ପୂର୍ଣ୍ଣ ନୀରବତା ଛାଇ ଯାଇଥିଲା ।

ତେଲୁଗୁ ସାହିତ୍ୟ ସଭାର ଜୟା ନାଇଡୁ ଥିଲେ ଜଣେ ସମ୍ମାନିତ ଦ୍ରଷ୍ଟା । ମିନି କବିତା ରଚନାରେ ସେ ଥିଲେ ପୁରସ୍କୃତ କବୟିତ୍ରୀ । ବିଭିନ୍ନ ପ୍ରସିଦ୍ଧ ପତ୍ର ପତ୍ରିକା ତାଙ୍କ ରଚନାକୁ ଆଗ୍ରହରେ ପ୍ରକାଶ କରିବା ଫଳରେ ବୃହତ୍ତର ତେଲୁଗୁ ସମାଜର ବହୁଳ ଶ୍ରଦ୍ଧାର ପାତ୍ରୀ ଥିଲେ କୁମାରୀ ଜୟା ।

ଇଂରାଜୀ ଓ ତେଲୁଗୁ ଉଭୟ ଭାଷାର ଦକ୍ଷ ତାର୍କିକ ଜୟା ନାଇଡୁ ଯେତେବେଳେ ପରିଷ୍କାର ଓଡ଼ିଆରେ ସମ୍ବୋଧନ କଲେ, 'ଭାଇ ଓ ଭଉଣୀମାନେ,' ଆନନ୍ଦ ଓ ଆଗ୍ରହର ଏକ ପ୍ରକାଣ୍ଡ ଲହରୀ ସଭାସ୍ଥଳକୁ ପ୍ଲାବିତ କରିଦେଲା । ଆବେଗାତିଶଯ୍ୟରେ କେତେଜଣ ଓଡ଼ିଆ ଛାତ୍ର ଠିଆ ହୋଇଯାଇ ହାତ ହଲାଇବାକୁ ଲାଗିଲେ ।

'ଏ ପୃଥିବୀର ଇତିହାସ ଅତ୍ୟନ୍ତ ବିଚିତ୍ର ବନ୍ଧୁଗଣ । ମଣିଷ ସମାଜକୁ ଉନ୍ନତ କରିବାକୁ ଯେଉଁମାନେ ଯୁଗେ ଯୁଗେ ସାଧନା କରିଛନ୍ତି,

ସେଇମାନଙ୍କୁ ହିଁ ସବୁବେଳେ ଗୋଷ୍ଠୀ ନିର୍ଯ୍ୟାତନାର ଶିକାର ହେବାକୁ ପଡ଼ିଚି ।'

ଜସ୍ମା ନାଇଡ଼ୁଙ୍କ ଦ୍ୱାରା ଭାବସମ୍ପଦଭରା ଶୁଦ୍ଧ ଓଡ଼ିଆ ଭାଷାର ବ୍ୟବହାର ଏକ ଅବିଶ୍ୱାସ୍ୟ, ଅପ୍ରତ୍ୟାଶିତ ଓ ଅଭାବନୀୟ ଦୃଶ୍ୟ ଥିଲା । ସମ୍ପୂର୍ଣ୍ଣ ଛାତ୍ରଛାତ୍ରୀ ମଣ୍ଡଳୀର କଳ୍ପନା ସୀମା ଲଙ୍ଘନ କରି ଯାଇଥିଲା ।

ବସ୍ତୁତଡ଼ର ପ୍ରସିଦ୍ଧ ଝର କଆଂଢୋଲର ଜଳରାଶି ଭଳି ଜସ୍ମା ନାଇଡ଼ୁଙ୍କ କଣ୍ଠରୁ ଅସଂଖ୍ୟ ଶବ୍ଦ ନିମ୍ନଗାମୀ ହୋଇ ଶ୍ରୋତୃବର୍ଗଙ୍କୁ ଆକଣ୍ଠ ନିମଜ୍ଜିତ କରି ଦେଇଥିଲେ ।

'ନିରଳସଭାବରେ ସତ୍ୟର ଅବିଚ୍ଛିନ୍ନ ଅନୁସନ୍ଧାନ କରୁଥିବା ଅକୃତ୍ରିମ ଦାର୍ଶନିକ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଗ୍ରୀସ୍‌ଦେଶର ନାଗରିକଙ୍କର ଅଭିଯୋଗ ଥିଲା । 'ସେ ତରୁଣମାନଙ୍କୁ ପଥଭ୍ରଷ୍ଟ କରୁଚନ୍ତି ।'

ବିଶ୍ୱର ସବୁଠାରୁ ଦରିଦ୍ର ବ୍ୟକ୍ତିମାନଙ୍କ ପାଇଁ ଯାର ଚକ୍ଷୁ ସଦାସର୍ବଦା ଅଶ୍ରୁସଜଳ ଥିଲା, ସେହି ଯୀଶୁଖ୍ରୀଷ୍ଟଙ୍କୁ ଅକୁଣ୍ଠ ଚିତ୍ତରେ କ୍ରୁଶ ଉପରେ ଚଢ଼ାଇଦେଲେ ତାଙ୍କର ନିଜର ଦେଶବାସୀମାନେ ।'

ଟିକିଏ ରହି ଜସ୍ମା ପୁଣି କହିବାକୁ ଲାଗିଲେ । ଏଥର କଣ୍ଠ ତାଙ୍କର ଥିଲା ଅଗ୍ନିଗର୍ଭକ ।

'ମଣିଷକୁ ମେଣ୍ଢା କରିଦେବା ପାଇଁ, ମଣିଷର ଯୁକ୍ତିବାଦୀ 'ଅହଂ'କୁ ମିଥ୍ୟା ସ୍ଲୋଗାନ୍‌ର କ୍ଲୋରୋଫର୍ମ ଶୁଙ୍ଘାଇ ଅଚେତନ କରିଦେବାପାଇଁ ନେତା, ପଣ୍ଡିତ ଓ ମୁଲ୍ଲାମାନେ ଯୁଗେ ଯୁଗେ ଷଡ଼ଯନ୍ତ୍ର କରିଚନ୍ତି । ଫଳରେ ଯୁଗେ ଯୁଗେ ସତ୍ୟଦ୍ରଷ୍ଟା ଓ ନ୍ୟାୟବାଦୀଙ୍କୁ ବାରମ୍ବାର କଳଖୁଣ୍ଟରେ ଦଣ୍ଡାୟମାନ ହେବାକୁ ପଡ଼ିଚି ।'

ଜସ୍ମା ନାଇଡ଼ୁଙ୍କର ସ୍ୱରର ତୀକ୍ଷ୍ଣତା ସଭାର ଉଦ୍ୟୋକ୍ତାମାନଙ୍କୁ କିଂକର୍ତ୍ତବ୍ୟବିମୂଢ଼ କରି ଦେଇଥିଲା ।

ଅତନ୍ତ ଚେନ୍ଦ୍ରିସୁ ଏଇ ଅପୋଟାଜେ ବୁଢ଼ିଙ୍କ ବାକ୍ୟବାଣିକୁ ସେମାନେ ଭୀଷଣ ଭସ୍ମ କରୁଥିଲେ ।

'ଆମର ଏଇ ପ୍ରିୟ ସହରରେ ଯେ ଦୁର୍ନୀତି ଓ ନାରୀନିର୍ଯ୍ୟାତନାର ଦୋକାନ ଖୋଲି ବସିଛି, ସେ କଥା ଆପଣମାନେ କ'ଣ ଜାଣନ୍ତି ନାହିଁ ?

ଏ ଅଞ୍ଚଳର ନର୍ସ, ଗ୍ରାମସେବିକା, କନ୍ୟାଶ୍ରମର ଛାତ୍ରୀ ଓ ମାଷ୍ଟ୍ରାଣୀଙ୍କର ଇଜ୍ଜତ ନେବାକୁ ଯେ ପ୍ରତିମୁହୂର୍ତ୍ତରେ ବ୍ୟଗ୍ର, ତାଙ୍କୁ କ'ଣ ଆପଣମାନେ ଚିହ୍ନି ନାହାନ୍ତି ?

ସହରର ଅର୍ଥ ଓ ନାରୀ ଯୋଗାଉଥିବା କେତେକ କଳାବଜାରିଆ ଅଫିସର୍ ଯାହା ଅପାର କୃପା ଲାଭ କରିବା ଫଳରେ ସମୁଦ୍ଦେଶ ଜନମତକୁ ଉପେକ୍ଷା କରୁନାହାନ୍ତି; ସେହି ରାଜନୀତିଜ୍ଞ ଜଣକ କିଏ, ତା' କ'ଣ ଆପଣମାନଙ୍କୁ ଅଜଣା ଅଛି ?

ଆପଣଙ୍କ ସହରରେ କେବଳ ଜଣେ ବ୍ୟକ୍ତି ରହିଛି, ଯାର ଅଜେୟ କଲମ ପ୍ରତି ମୁହୂର୍ତ୍ତରେ ଏଇ ପ୍ରଭାବଶାଳୀ ବ୍ୟକ୍ତିଙ୍କର ମୁଖା ଖୋଲି ଦେଉଛି ।

ଆମ ପ୍ରିୟ ରସୁଲଗଡ଼ର ଦୀନହୀନ ବ୍ୟକ୍ତିଙ୍କୁ ମଧ୍ୟ ଯେଉଁମାନେ ଶୋଷଣ କରୁଛନ୍ତି, ସେମାନଙ୍କ ବିରୁଦ୍ଧରେ କେବଳ ଗୋଟିଏ ବ୍ୟକ୍ତିର ସ୍ୱର ଉଠୁଛି ।

ସେହି ଗୋଟିକ ସତ୍ୟ, ସାହାସୀ ମଣିଷର ସ୍ୱରକୁ; ଆମ ସମସ୍ତଙ୍କର ଆତ୍ମା ଓ ବିବେକର ସ୍ୱରକୁ, ଜବତ୍ କରିଦେବାକୁ ରସୁଲଗଡ଼ରେ ପ୍ରଚଣ୍ଡ ଷଡ଼ଯନ୍ତ୍ରର ଜାଲ ବିସ୍ତାର କରାଯାଉଛି ।

କହନ୍ତୁ, ଆପଣମାନେ କ'ଣ ସେହିମାନଙ୍କ ସହିତ ସମ୍ମିଳିତ ହେବେ, ଯେଉଁମାନେ ବିବେକର ଆବାଜକୁ ସମାଧି ଦେଇଦେବାପାଇଁ ବଦ୍ଧ ପରିକର ?'

ଦସ୍ୟୁର କଥା, ଯୁକ୍ତି ଓ ସ୍ୱରରେ ଯେଉଁ କୁହୁକ ଥିଲା ତାହା ଛାତ୍ର ସମାଜକୁ ମନ୍ତ୍ରମୁଗ୍ଧ କରି ଦେଇଥିଲା । ଦସ୍ୟୁର ପ୍ରଶ୍ନର ଉତ୍ତରରେ ଏକ ପ୍ରବଳ 'ନାଁ'ର ଝଙ୍କା ସଭା ମଞ୍ଚ ଉପରେ ବର୍ଷିଗଲା ।

'ଏ ମାଟିକୁ ସ୍ୱାଧୀନ କରିବାପାଇଁ, ଏ ଦେଶର ଦୀନଦୁଃଖୀଙ୍କ ଅଧରରେ ହସର ଗୋଲାପ ଫୁଟାଇବା ପାଇଁ ଆମର ତରୁଣମାନେ ଗୁଳିରେ ଛାତିକୁ ଝାଲୁଣି କରି ଦେଇଥିଲେ, ଫାଶି ଖୁଣ୍ଟକୁ ବିବାହମଣ୍ଡପ ଜ୍ଞାନ କରିଥିଲେ ।

ସେମାନଙ୍କ ଚରମ ତ୍ୟାଗ ଆଜି ସ୍ୱାଧୀନଭାରତରେ ଅପମାନିତ, ଅସମ୍ମାନିତ ।

ସମ୍ପ୍ରତି ଭାନମାନେ ଇଜମାଣ୍ଡଙ୍କର ମୁଖାପିଣ୍ଡ ଆଜି ଏ ଦେଶକୁ ଶାସନ କରୁଛନ୍ତି । ଏଇ କ୍ଷମତାସୀନ ଅପରାଧୀମାନଙ୍କର ଗୁମାସ୍ତାମାନେ ସ୍କୁଲ କଲେଜରେ ଆତଙ୍କ ସୃଷ୍ଟି କରୁଛନ୍ତି । ମଦ ଦୋକାନର ଆଡ୍‌ଡାରେ ଏମାନେ ଗୋପନରେ ଆଲୋଚନା କରନ୍ତି କି ଉପାୟରେ ମାଲିକର ସମାଲୋଚକମାନଙ୍କୁ ଏମାନେ ଜବତ୍ କରି ନେବେ । ଏମାନଙ୍କ ପାଇଁ ଉତ୍ସନାଗରେ କେବଳ ଗୋଟିଏ ଶବ୍ଦ ରହିଛି ।

ହଠାତ୍ ସଭାସ୍ଥଳୀରେ କିଏ ଜଣେ ଚିତ୍କାର କରି ଉଠିଲା 'ଦେଶ ଦ୍ରୋହୀ' ।

ଜପ୍ପା ନାଇଡୁଙ୍କ ମୁହଁରେ ମିଠା ହସ ଦେଖାଦେଇଥିଲା କାରଣ ମିଥ୍ୟାର କଳାପରଦା ଛିନ୍ନ କରି ପୂର୍ବଦିଗନ୍ତରେ ଅରୁଣୋଦୟର ଛଟା ବିଚ୍ଛୁରିତ ହୋଇ ସାରିଥିଲା ।

ହଠାତ୍ ପ୍ରଥମ ବର୍ଷର ଜଣେ ତରୁଣ ଠିଆହୋଇ ଚିତ୍କାର କଲା, 'ଅଧ୍ୟାପକ ଅରୁଣାଭ ଏ କଲେଜର ଗର୍ବ । ଆମେ ତାଙ୍କୁ ସମର୍ଥନ କରୁ ।' ସଭାର ଉଦ୍ୟୋକ୍ତାମାନେ କ୍ଷଣକପରେ ଜଣେ ଜଣେ ସଭାସ୍ଥଳ ତ୍ୟାଗ କରି ସାରିଥିଲେ । ସେମାନଙ୍କର ସୁପରିକଳ୍ପିତ ଷଡ଼ଯନ୍ତ୍ର ଜପ୍ପା ନାଇଡୁଙ୍କର ଗୋଟିଏ ଆଘାତରେ ବୋମା ବିଧ୍ୱସ୍ତ ପ୍ରାସାଦ ଭଳି ଭଗ୍ନସ୍ତୂପରେ ପରିଣତ ହୋଇଯାଇଥିଲା ।



ଉତ୍ପୀଡ଼ନ, ଉତ୍ପାଟନ, ଅନ୍ତଃସ୍ପର୍ଶୀ ଶୋଷଣ ।
ଶୋଷଣର ପରିଣତି ଦାରିଦ୍ର୍ୟ, କ୍ଷୁଧା, ଅଶିକ୍ଷା, ରୋଗ ।
ଅଖଣ୍ଡ ଶୋଷଣର ରାଜ୍ୟ କୋରାପୁଟ ଓ କଳାହାଣ୍ଡି ।

ଶୋଷଣର ସର୍ବପ୍ରଧାନ ଶିକାର କୋରାପୁଟ ଓ କଳାହାଣ୍ଡିର ବନବାସୀ । ଅର୍ଦ୍ଧାହାର, ଅନାହାରରେ ବନବାସୀ ଉପୁଜାଏ ଫସଲ ।

ଧାରଶ୍ରାବଣର ଅଛିଣ୍ଡା ବର୍ଷାରେ ବନବାସୀ ଝାଟି ବୁଲିଥାଏ ତାର ଜମି ଉପରେ । ଭାଦ୍ରବର ପାଣିଟେ ଖାରଧରି ଗଳିଯାଏ ତାର କଳା କଳା ଅବୟବ ଗୁଡ଼ିକ ମଧ୍ୟରେ ।

ଶୀତ ଲହରୀ ଶୈଳଜାଲିକ ଶୀତରାତିରେ ସେ ରହେ ନିଦ୍ରାଶୂନ୍ୟ, କାରଣ ତାର ପ୍ରବଳ କୁହାଟ ଶୁଣି ଫସଲ ଲୋଭୀ ବନ୍ୟଜନ୍ତୁ ଲେଉଟି ଯାଏ ତାର ଗିରିଗୁହାକୁ ।

ଅନବରତ ଅକୁଣ୍ଠିତ ଶ୍ରମ ଅଜାଡ଼ି ଦିଅନ୍ତି ବନବାସୀ ପରିବାରର ପ୍ରତ୍ୟେକ ସଦସ୍ୟ ।

ଡାହାଡ଼ ଫୁଟା ସୁନାର ଫସଲ ପବନରେ ଦୋଳି ଖେଳେ । ବନବାସୀ ମନରେ ଆନନ୍ଦର ଲମ୍ଫ ଆରମ୍ଭ ହୋଇଯାଏ । ଏ ଆନନ୍ଦର ଆୟୁଷ କେତେ ଦିନ ?

ଫସଲ ଘରମୁହାଁ ନ ହେଉଣୁ ଆରମ୍ଭ ହୋଇଯାଏ ଶୋଷଣ । ଶୁଣ୍ଢ଼ି ଠିଆ ହୋଇଥାଏ ମଦଠେକା ହାତରେ ଧରି । ମଦରେ ମିଶିଥାଏ ପାହାଡ଼ିଆ ଦେହକୁ ଦୁର୍ବଳ କରିଦେଉଥିବା ବିଷାକ୍ତ କନଷ ଏମୋନିୟମ୍ ସଲ୍ଫେଟ୍ । ପର୍ବପର୍ବାଣୀରେ ମଦ ଖାଇବା ଆଦିବାସୀର ପରମ୍ପରା ।

ଧୀରେ ଧୀରେ ବନବାସୀର ସମ୍ପତ୍ତି ଚାଲିଯାଏ ମଦବେପାରୀ କବଳକୁ । ବନବାସୀ ଏମ୍. ଏଲ୍. ଏ ଓ ମନ୍ତ୍ରୀ ଭୋଟ ପାଆନ୍ତି ବନବାସୀଙ୍କ, କିନ୍ତୁ ଟଙ୍କା ପାଆନ୍ତି ବ୍ୟବସାୟୀଙ୍କ । ବନବାସୀ ସମାଜର ଶୋଷଣରେ ଏମାନଙ୍କର ଅଂଶ କିଛି କମ୍ ନୁହେଁ ।

ଜାତିରେ ବନବାସୀ ହେଲେ ବି ଏମାନେ ଚଳଣି ଓ ଆଚରଣରେ ଶୋଷକ ଶ୍ରେଣୀର ।

ସୋରିଷ, ଅଳସୀ, କାନ୍ଦୁଲ ଫଳାଉଥିବା ବନବାସୀ ଯାହା ପାଏ, ତାହା ସେ ବଦଳରେ ଶାଗ, ମାଛ ମୂଲ୍ୟରେ ବସ୍ତୁଗଡ଼ର ସାହୁକାରଙ୍କୁ ।

ସାହୁକାରର ଏସବୁ ଫସଲରେ ଲାଭ ଶହେରୁ ଶହେ । ଗ୍ରାହକ ଯେତେ ଦାମ୍ ଦିଏ, ତାର ଅଧା ନିଏ ସାହୁକାର । ଫଳରେ କେବଳ ପୁଂଜି ଖଟାଇ ଏ ହାତକୁ ସେ ହାତ ଜିନିଷ କରୁଥିବା ସାହୁକାର କୋଠା ପରେ କୋଠା ଗଢ଼ିଚାଲେ ।

ସାହୁକାରର ସ୍ତ୍ରୀ ଓ କନ୍ୟାର ଦେହ ସ୍ୱର୍ଣ୍ଣାଳଙ୍କାର ବୋଝରେ ନଇଁ ଯାଏ । ଏ ଦେଶରେ ଲୁଣ୍ଠିତ ହେଉଛି ଗ୍ରାହକ, ଶୋଷିତ ହେଉଛି ଉତ୍ପାଦକ, ଲାଭବାନ୍ ହେଉଛି ଦଲାଲ୍ ଓ ବଡ଼ ବ୍ୟବସାୟୀ ।

କୋରାପୁଟ୍‌ରେ ଆଦିବାସୀ ଶୋଷଣର ମୁଖ୍ୟ କାରପଟଦାର ସ୍ୱୟଂ ସରକାର ।

ଆଦିବାସୀ ଉନ୍ନୟନ ଯୋଜନା ଦ୍ୱାରା କେବଳ ଚୂନ ଧବଳକରଣ ହିଁ ସାର ହୁଏ । ଆଦିବାସୀର ଭାଗ୍ୟ ପ୍ରକୃତରେ ନିୟନ୍ତ୍ରିତ କରନ୍ତି କୋରାପୁଟର ଶେଠ ବ୍ୟବସାୟୀମାନେ ।

ଆଦିବାସୀ ଉତ୍ପାଦିତ ଜିନିଷର ଦର ଅତ୍ୟନ୍ତ କମିଯାଏ ଏହିମାନଙ୍କର ଚକ୍ରାନ୍ତ ଯୋଗୁଁ ।

ସରକାରୀ ହାକିମ୍, ପୋଲିସ୍ ପୋଷା ହୋଇଥାନ୍ତି ଏମାନଙ୍କର ସ୍ୱାର୍ଥ ଜଗିବା ପାଇଁ ।

ଏମାନଙ୍କର ନିର୍ଦ୍ଦେଶରେ ମନ୍ତ୍ରୀମାନେ ସମ୍ପୂର୍ଣ୍ଣଭାବେ ପରିଚାଳିତ ହୋଇଥାନ୍ତି । ଠିକ୍ ପପେଟ୍ ମାଷ୍ଟରର ହାତରେ ପପେଟ୍‌ମାନେ ପରିଚାଳିତ ହେଲାଭଳି । ଯେଉଁ ସମାଜ ଶ୍ରମର ଉପଯୁକ୍ତ ମୂଲ୍ୟ ପାଏନା, ସେ ସମାଜ ଚିରଦିନ ଅବହେଳିତ ରହିବ ନିଶ୍ଚୟ ।

ଶ୍ରମର ମୂଲ୍ୟ ଆବକାରୀର୍ ଚହାଣ୍ଡ ତଳ ଗଡ଼ାଇ ଦିଆଯାଉଛି ସୂତାସୂତା ଧରି । ଫଳରେ ତାର କୌପୀନ୍‌ଟି ଲୁଗାର ଆକାର ଧାରଣ କରିବା ଅସମ୍ଭବ ହୋଇପଡ଼ିଛି ।

ତାର ରୁଗ୍ଣ ସନ୍ତାନ ପକ୍ଷରେ ଔଷଧ ଟୋପାଏ ସରଫେଇ ହୋଇପଡ଼ିଛି । ପୃଥିବୀର ବିଭିନ୍ନ ଦେଶର ଜେଲ୍‌ର ଅତିଥି ହୋଇ ଯେଉଁ ଭାରତୀୟ ସନ୍ତାନ ଜଣକ ବିଶ୍ୱନାଗରିକତାର ଆହ୍ୱାନ ଦେଇଥିଲେ, ସେହି ଆଜୀବନ ବିପ୍ଳବୀ ଲୋହିଆ କହିଥିଲେ ଦରଦାମ୍‌ର ହାତସଫାଇ ଶୋଷଣକୁ ଦିଏ ଆଇନ ସମ୍ମତ ରୂପ ।

ସମାଜବାଦୀ ଭାରତରେ ଲାଭର ସୀମା ନିରୂପଣ ଏକ ଅପରାଧ କାରଣ ଏ ଦେଶର ଭାଗ୍ୟଡୋରି ବେପାରୀ ଓ ଶିଳ୍ପପତିଙ୍କ ହାତରେ । ପରିଶ୍ରମ ଅପେକ୍ଷା ଧୂର୍ତ୍ତତା ଏ ଦେଶରେ ଅଧିକ ସମ୍ମାନ ଦାବୀକରେ । ତେଣୁ ସକାଳ ପହର ଗଜମଣ୍ଡିଙ୍କ ଆଲ୍ଲାଙ୍କ ମେହେରବାନରେ ସନ୍ଧ୍ୟାରେ ଯୋଗଦେଇଥାନ୍ତି ଲକ୍ଷପତିଙ୍କ କ୍ଲବ୍‌ରେ ।

ଲୁଣ୍ଠନ, ସ୍ୱପୋଷାସୀ ଉଦାସୀନତା ତିନୋଟି ଅକ୍ଷରେଖା ଉପରେ ଗଡ଼ିଚାଲିଛି ଭାରତୀୟ ଜନତାର ଜୀବନ ରଥ ।

ଛଳଶ୍ରେଣୀର ନଷ୍ଟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ହେଉଛି ଅପରିସୀମ ଲୁଣ୍ଠନ ।

ଭାରତୀୟ ନେତା ସମାଜର ଚରିତ୍ର ଉପରେ ସ୍ପଷ୍ଟ ମୁଦ୍ରାଙ୍କ ଅଙ୍କିତ ରହିଛି ସ୍ୱପୋଷାସିର ।

ସାଧାରଣ ଭାରତୀୟ ଜନତାକୁ ପକ୍ଷାଘାତ-ଗ୍ରସ୍ତ କରୁଛି ତାର ଚରମ ଉଦାସୀନତା ।

କୌଣସି ଉଦାସୀନ ଜାତି କେବେ ବଳିଷ୍ଠ ଗଣତାନ୍ତ୍ରିକ ପରମ୍ପରାର ଜନକ ହୋଇପାରେନି, ଏକଥା ଇତିହାସ କହେନା । ଆମେ ସନ୍ତୁଷ୍ଟ, କିନ୍ତୁ ସ୍ଥାଣୁ ।

ବର୍ତ୍ତମାନର ଭାରତୀୟ ସମାଜ ଏକ ପଚା ଜଳାଶୟ, ଯେଉଁଠି ରକ୍ତଶୋଷା ମଶକମାନେ ଖୁସିରେ ଅଣ୍ଡା ଦେଇ ଚାଲିଛନ୍ତି ।

ଏକଦା ଆଦିବାସୀ ସମାଜରୁ ଶୋଷଣକୁ ବହିଷ୍କାର କରିବାକୁ ଯେଉଁମାନେ ବ୍ୟାକୁଳ ଥିଲେ, ସେମାନେ ଯୋଜନା କରିଥିଲେ ବିଭିନ୍ନ ସମବାୟ ସଂସ୍ଥାର । ସମବାୟ ସଂସ୍ଥା ଗଢ଼ାଯାଇଥିଲା ବିପୁଳ ଉତ୍ସାହ ଓ ଉନ୍ମାଦନା ମଧ୍ୟରେ ।

ଆଜି ପ୍ରାୟ ସମସ୍ତ ସମବାୟ ସଂସ୍ଥା ପକ୍ଷାଘାତ ଗ୍ରସ୍ତ । ସ୍ୱାର୍ଥପର ରାଜନୀତିବାଲା ଓ ଦୁର୍ନୀତି ଗ୍ରସ୍ତ ଅଫିସର ଗ୍ରୀକ୍ ପୁରାଣ ଓଡ଼େସି ବର୍ଣ୍ଣିତ ସ୍କିଲା ଓ ଚେରିବଡ୍ସ୍ ଭଳି ଉଦରସ୍ଥ କରି ଦେଇଛନ୍ତି ଆଦିବାସୀ ଅଞ୍ଚଳର ସମବାୟ ସଂସ୍ଥାଗୁଡ଼ିକୁ ।

ଉତ୍ପାଦକର ସହାୟ ପାଇଁ ଗଢ଼ାଯାଇଥିବା ଏହି ସମବାୟ ସଂସ୍ଥା-ଗୁଡ଼ିକ ଆଜି ସାହୁକାର ହାତର କ୍ରୀଡ଼ନକ ।

ଭାରତୀୟ ସମାଜରେ କ୍ୟାନସର ବ୍ୟାଧି ସୃଷ୍ଟି କରିଚନ୍ତି ଅସୁସ୍ଥ ରାଜନୀତିର ଗଣି ଗଣି ଜୀବାଣୁ । ସମାଜର କୌଣସି ଅଙ୍ଗ ଏ ଜୀବାଣୁ-ମାନଙ୍କର ଅଛୁଆଁ ରହିପାଇନି । ଭାରତ ଭଳି ଦରିଦ୍ର ଦେଶରେ ଦିଲ୍ଲୀରେ ବାଦଶାହ ଓ ପ୍ରାଦେଶିକ ରାଜଧାନୀମାନଙ୍କରେ ଉଜିରମାନଙ୍କର ଉନ୍ନତି ବିଳାସ ଦୃଷ୍ଟିକଟୁ ହୋଇଉଠିଛି । ସ୍ୱାଧୀନତାର ତିନି ଦଶନ୍ଧି ମଧ୍ୟରେ ଦରିଦ୍ର ଦରିଦ୍ରତର ହୋଇଯାଇଛି ।

ଯୋଜନାର ବିପୁଳ ସମ୍ବଳ ଏକ ସୁବିଧାବାଦୀ ଗୋଷ୍ଠୀର କ୍ଷମତା ବୃଦ୍ଧିରେ ସହାୟକ ହୋଇଛି ।

ଅରୁଣାଭ ବ୍ୟଥିତ ଥିଲା ।

ଆଦିବାସୀ ସମାଜର ଦାରୁଣ ଦୁର୍ଦ୍ଦଶା ତାକୁ ଚିନ୍ତାକୁଳ କରିଥିଲା । କୋରାପୁଟରେ ଏକଦା ଗ୍ରାମଦାନର ବାର୍ତ୍ତା ପ୍ରଚାର କରି ଆଦିବାସୀ ମନରେ ଉନ୍ମାଦନା ସୃଷ୍ଟି କରିଥିଲେ ଯେଉଁ ଭୂଦାନ ଗୋଷ୍ଠୀ, ସେମାନଙ୍କ ମଧ୍ୟରୁ ଅଧିକାଂଶ ବୁଦ୍‌ବୁଦ୍ ଭଳି ମିଳାଇ ଯାଇଥିଲେ ।

ଯେଉଁ କେତେକ କର୍ମୀ ମାଟି କାମୁଡ଼ି ପଡ଼ି ରହିଥିଲେ କଟକ ଜିଲ୍ଲାର ମାୟା ତ୍ୟାଗକରି, ସେମାନେ ସଂସାର ଜଞ୍ଜାଳ ମଧ୍ୟରେ ଆତ୍ମସତ୍ତା ହରାଇ ସାରିଥିଲେ ।

ଭୂଦାନ ଆନ୍ଦୋଳନର ଅଗ୍ନି କେଉଁଦିନୁ ଲିଭି ପ୍ରଚୁର ପାଉଁଶ ସ୍ଥାନେ ସ୍ଥାନେ ଜମା ରହିଥିଲା ।

ପୋଲିସ୍ ଅତ୍ୟାଚାରରେ ଭଗ୍ନଜାନୁ ନକ୍‌ସାଲାଇଟ୍‌ମାନେ କ୍ଷତ ଗୁଡ଼ିକରେ ପ୍ରଲେପ ବୋଳିବାରେ ବ୍ୟସ୍ତଥିଲେ । ସେମାନଙ୍କର କାର୍ଯ୍ୟକଳାପ ଥରେ ସାହୁକାର ମହଲରେ ଆତଙ୍କର ଦେମାଳ ପବନ ସୃଷ୍ଟି କରିଥିଲା ।

କୋରାପୁଟ୍‌ର ଶୋଷକ ଗୋଷ୍ଠୀ ଶ୍ୱାସନେଇଥିଲେ ସେମାନଙ୍କର ମୃତ୍ୟୁ ଘଣ୍ଟି ବାଜିବାକୁ ଆଉ ବିଶେଷ ବିଳମ୍ବ ନାହିଁ ।

ବ୍ୟକ୍ତିଗତ ହିଂସାର ଚୋରବାଲି ଭିତରେ ନିଆଁକୁ ନେଇ ଖେଳୁଥିବା ନକ୍‌ସାଲାଇଟ୍‌ମାନେ ନିଃଶେଷ ହୋଇଗଲେ ।

କୋରାପୁଟର ଦର୍‌ବଳପୁରେ ଏବେ କେବଳ ହତାଶାର ଭସା ଭସା ମେଘ । କୋରାପୁଟଠାରୁ ବହୁଦୂର କଟକ ଓ ଭୁବନେଶ୍ୱର ସହରରେ କୋରାପୁଟ୍‌ର ଭାଗ୍ୟ ନିୟନ୍ତ୍ରିତ ହୁଏ । ତୀକ୍ଷ୍ଣ ଚଂଚୁର ଆଘାତରେ କୋରାପୁଟକୁ ଯେଉଁମାନେ ରକ୍ତାକ୍ତ କରିଚନ୍ତି, ସେଇମାନେ ଦେଖାଦିଅନ୍ତି ଓଡ଼ିଶାର ରାଜଧାନୀରେ କୋରାପୁଟର ପ୍ରବକ୍ତା ଓ ପ୍ରତିନିଧି ଭାବରେ ।

ଅରୁଣାଭ ସବୁବେଳେ ଭାବେ ଏ ସମାଜ ସୁଧୁରିବ କେମିତି । ସମାଜର ପରିବର୍ତ୍ତନରେ ଶିକ୍ଷା ଏକ ଶକ୍ତିଶାଳୀ ଆୟୁଧ, କିନ୍ତୁ

କୋରାପୁଟରେ ଶିକ୍ଷା ଏକ ଦୁର୍ହାଳିଆ ଗାଣ୍ଡି । ଏଠାରେ ଶରଦର୍ଚ୍ଚିକ, ରାଜମାତଙ୍କ ସମସ୍ତଙ୍କର ହାତ ସବୁବେଳେ ଟକ୍‌ଭଣ ।

ନବାକ୍ ଆଦିବାସୀର ପିଠିରେ ହାତବୁଲାଇ ସରକାରୀ ଧନ ହାତଚେଠ କରିବା କୋରାପୁଟରେ ବାଁ ହାତର ଖେଳ ।

ଅରୁଣାଭ ଭରୁଥିଲା ଏ ବିସ୍ମୃତ ରାଜ୍ୟର ମାଇଲ୍ ମାଇଲ୍ ଅନ୍ଧାର ଭେଦିଁ ଆଲୋକ ରେଖା କ'ଣ କେବେ ଏଠାକୁ ଆସିବ ?

କେବେ କେବେ ରାୟଗଡ଼ ସହରରେ ରେଷ ଆଉ ବ୍ୟବସାୟ ମଧ୍ୟରେ ସୀମାରେଖା ଆବିଷ୍କାର କରିବାକୁ ଗଳଦ୍‌ଘର୍ମ ହୋଇଉଠେ ସେ ।

ବଜାରରେ ସେ ପଦସ୍ଥ ଶୁଟଣ ସକାଳେ ଯେଉଁ ରସୁଣ କେଜି ଦୁଇଟଙ୍କାରେ ବିକି ହେଉଥିଲା, ସେ ରସୁଣ ସନ୍ଧ୍ୟାରେ ତିନିଟଙ୍କାରେ ବିକି ହେଉଛି । ପୋଲିସ୍‌ର ଆଖି ଆଗରେ ରେଳ ପାନ୍ ଅଲଗ ଅଏଲ୍ ଷକଶଡ଼ ଡ଼ବା ମିଶାଯାଏ ଚଣାତେଲ ଓ ସୋରିଷ ତେଲରେ ।

ବ୍ୟବସାୟୀର ମୁନାଫାର ଅଙ୍କଟା ବଢ଼ିଚାଲେ । ତଣ୍ଡିନ୍ତ ସଭାସମିତିରେ ସେମାନଙ୍କର ପୃଥୁଳ ବପୁମାନେ ଆଗ ଧାଡ଼ିରେ ଚେୟାର୍ ମଣ୍ଡନ କରନ୍ତି ।

ସୌଦାଗର ମହଲରେ ବମ୍ଳବର ରାଜକନ୍ୟା ଶୋଇଯାଇଛି ନଘୋଡ଼ ନିଦରେ ।

କେଉଁ ରାଜପୁତ୍ର କେବେ ଘୋଡ଼ା ଦୌଡ଼ାଇ କଣ୍ଟାବାଡ଼ ଅତିକ୍ରମ କରି ତାକୁ ଉଠାଇବ ତାହା କେହି କହିପାରିବେନି ।

ଜନତା ଆଗରେ ପଡ଼ିରହିଛି ପ୍ରତୀକ୍ଷାର ଅଧରନ୍ତୁ ପ୍ରଳମ୍ବିତ ପଥ ।

ସମସ୍ତ ଉପକରଣ ପ୍ରଚୁରମାତ୍ରାରେ ମହଜୁଦ ଥିବା ସତ୍ତ୍ୱେ ଯାନ୍ତ୍ର ଭାରତ ବର୍ଷକୁ ପାର୍ଦ୍ଧଦଣ୍ଡରେ ସ୍ୱର୍ଣ୍ଣ ପୂର୍ଣ୍ଣ କରିବାକୁ କୁଣ୍ଠିତ । ଯାନ୍ତ୍ରିକ ଚକ୍ରଜ୍ୟାମାନଙ୍କର ସମସ୍ତ ଥିଓରି ଭୁଲ୍ ପ୍ରମାଣିତ ହୋଇଯାଉଛି କ୍ଷମାଳପୁର ଦକ୍ଷିଣ ଦିଗର ଏଇ ପୁରାତନ ଦେଶଟିରେ ।

ଅର୍ଦ୍ଧାହାର, ଅନାହାରରେ ମରୁଥିବା ଅଗଣିତ ବ୍ୟକ୍ତିଙ୍କ ଚକ୍ଷୁରେ ଅନ୍ତୁଣାଭ ଦେଖିବାକୁ ପାଇବ ସାମାନ୍ୟତମ ଅଗ୍ନିର ଝଲକ । ସେମାନଙ୍କର ବଳଦ ଭଳି ଢିମାଢିମା ଆଖିରେ କେବଳ ଭରି ରହିଛି ଅଦ୍ଭୁତ ଯୁଗର କ୍ଲାନ୍ତି ଓ ଅସହାୟ ଉଦାସୀନତା । ଶିକ୍ଷିତ ବେକାରଙ୍କର ଭିଡ଼ ବଢ଼ି-ଲୁଣ୍ଠିତ ମନ୍ତ୍ରୀଙ୍କ 'ଆପଣଙ୍କର ବିଶ୍ୱସ୍ତ' ବ୍ୟକ୍ତିମାନଙ୍କର ଦୋହିଁବୋ ଚଳେ ।

ତ୍ୟାଗୀ, ଉତ୍ସାହୀ ଯୁବାଗୋଷ୍ଠୀ କଣ୍ଠର ସ୍ଲୋଗାନ୍ କେବଳ ଭାଷାର ଧର୍ମର କମ୍ପା ଜାଣିଛ ।

ଅସନ୍ତୁଷ୍ଟ ଜନସାଧାରଣଙ୍କ ହତାଶା ସେମାନଙ୍କୁ ବାଧ୍ୟ କରୁଛି ସଙ୍ଘର୍ଷ ଅଞ୍ଚଳରେ ସଂଗ୍ରାମର ପାଦ ଧୋଇବା ଲାଗି । ବିପ୍ଳବର ସାହନାଇ ହୁଏତ ଭାରତବର୍ଷରେ ବାଜି ନପାରେ, କିନ୍ତୁ ପ୍ରତି-ବିପ୍ଳବ ଏମାନଙ୍କୁ' ଅଶାନ୍ତ କରିବା ଅସମ୍ଭବ ହୋଇ ସାରିଲାଣି ।



ଝିଅଟିର ଚକ୍ଷୁରେ ଅଶ୍ରୁର ଆଷାଢ଼ ।

ଶୁଭ୍ରାଙ୍ଗୀ କନ୍ୟାଟିର କୋମଳ ଅଙ୍ଗ ସଷ୍ଟି ଏ ପର୍ଯ୍ୟନ୍ତ ଯୌବନର ସ୍ୱାଗତ ପାଇଁ ପ୍ରସ୍ତୁତ ହୋଇପାରିନ ।

ମହାବିଦ୍ୟାଳୟର ପ୍ରଥମ ବାର୍ଷିକ ଶ୍ରେଣୀର ଏ ଛାତ୍ରୀଟିର ସରଳ ମୁଖରେ ବେଦନାର ଛାପ ପାଇଁ ଦାୟୀ କେଉଁ ନିଷ୍ଠୁର ପରିସ୍ଥିତି ? ଆହତ ଭୁଜଙ୍ଗୀର ଦୃପ୍ତ ଫଣା ନେଇ ସାଙ୍ଗରେ ତାର ଯେଉଁ ନାରୀଟି ସୁଲୋଚନା, ସେ କ'ଣ ଏଇ କନ୍ୟାଟିର ଜନ୍ମଦାତ୍ରୀ ?

'ଟିକଏ ଶୁଣନ୍ତୁ' । ଅରୁଣାଭ ପଥରୋଧ କରି ଠିଆ ହୋଇଗଲେ ଠିକ୍ ରାସ୍ତା ଉପରେ ।

'ଆପଣଙ୍କ ମହାବିଦ୍ୟାଳୟରେ କାହାର ରୂପସୀ କନ୍ୟା କ'ଣ ଅକ୍ଷତ ଯୌବନା ରହିପାରିବେନି ?'

ଅରୁଣାଭ ନୀରବ ଥିଲେ ।

'ପ୍ରଥମ ବାର୍ଷିକ ବିଜ୍ଞାନର ଛାତ୍ରୀ ମୋର ଏଇ କନ୍ୟାକୁ କୁହା-ଯାଇଛି ତାର ତନୁଶ୍ରୀ ଲୁଣ୍ଠିତ ନହେଲେ ସେ ଆଗାମୀ ପରୀକ୍ଷାରେ ପାସ୍ କରିପାରିବେନି ?'

ମହାବିଦ୍ୟାଳୟରେ ଅନାଚାର ।

ଅରୁଣାଭ ଅନୁଭବ କଲେ ତା ପାଦତଳର ମାଟି ଧୀରେ ଧୀରେ ଖସିଯାଉଛି । ଦେଶର ଶାସନକର୍ତ୍ତାମାନଙ୍କର ଦୁର୍ବୁଦ୍ଧିର ସର୍ବସାଧାରଣରେ ସମାଲୋଚନା କରିବାରେ ସେ କାର୍ପଣ୍ୟ କରିନାହାଁନ୍ତି, ଅଥଚ ଠିକ୍ ତାର କର୍ମଶାଳାର ଦେହଳୀ ଆରପଟେ ... ...

ଆପଣ ଏ ସମ୍ପର୍କରେ କିଛି ପଦକ୍ଷେପ ନେଇପାରିବେ ?

'ନିଶ୍ଚୟ, ଆପଣ ମୋତେ ସବୁ ଘଟଣା ଖୋଲି କହନ୍ତୁ ।'

ପଦାର୍ଥ ବିଜ୍ଞାନର ଅଧ୍ୟାପକ ମୃଣ୍ମୟ ସେନାପତିଙ୍କର କଅଁଳିଆ ଝିଅମାନଙ୍କର ମାଂସ ପ୍ରତି ଆକର୍ଷଣ ପ୍ରଚୁର ।

କେତେ କେତେ କୌଶଳେ ସେ ସେମାନଙ୍କୁ ଶିକାର କରନ୍ତି ।

ପଦାର୍ଥ ବିଜ୍ଞାନ ଗବେଷଣାଗାରକୁ ଲାଗିଥିବା ତାଙ୍କର ରୁମ୍‌ରେ ସେ ବସିଥାନ୍ତି ଠିକ୍ ଥୋପପକାଇ ଜଗିଥିବା ଧ୍ୟାନୀ ମାଛଧରାଳି ଭଳି ।

ଏକାକିନୀ ଝିଅଟିଏ ଖାତାଟିଏ ଧରି ସେ ଭିତରକୁ ସନ୍ତର୍ପଣରେ ପଶି ଆସେ ।

ଅଧ୍ୟାପକଙ୍କ କଲମ ଉତ୍ତରଖାତାରେ ନାଲିଗାର ଦେଲାବେଳେ ଝିଅଟିର ଦୃଷ୍ଟି ପଡ଼େ ଟେବୁଲ୍‌ର କାଚତଳେ ଜଳ ଜଳ ଦିଶୁଥିବା ରାଧାକୃଷ୍ଣଙ୍କର ଯୁଗଳ ଫଟୋଗୁଡ଼ିକୁ ।

'ଖୁବ୍ ସୁନ୍ଦର ହୋଇଚି, ନୁହେଁ ?'

ଝିଅଟିର ନାଲି ଓଠରେ ସାମାନ୍ୟ ହସର ସୂଚନା ପାଇଲାମାତ୍ରେ ଅଧ୍ୟାପକ ଉଲ୍ଲସିତ ହୋଇଉଠନ୍ତି ।

'ଦୁନିଆରେ ସବୁଠାରୁ ବଡ଼ ସତ୍ୟ ପ୍ରେମ । ଆମର ଆରାଧ୍ୟ ଦେବତା ଶ୍ରୀକୃଷ୍ଣ ଆମକୁ ଏଇ କଥା ହିଁ ଶିକ୍ଷା ଦେଇ ଯାଇଚନ୍ତି ।'

ଝିଅଟି ନୀରବ ଥାଏ । ଅଧ୍ୟାପକ ସେନାପତି ଚଞ୍ଚଳତାର ଭାବରେ ଚାହିଁ ରହିଥାନ୍ତି ଝିଅଟିର କଅଁଳିଆ ମୁହଁଟିକୁ । କୌଣସି ହସ୍ତରେଖାବିଶେଷଜ୍ଞ ଭଳି ସେ ମନେ ମନେ ହିସାବ କରୁଥାନ୍ତି ଏ ଝିଅଟିର ଆତ୍ମସମର୍ପଣ ପ୍ରବୃତ୍ତିର ମାତ୍ରା କେତେ ବେଶୀ ।

'ଏ କହିଛି ସାର୍ ଦେଇଚନ୍ତି । କହୁଚନ୍ତି ଏ କଥା ପଢ଼ିଲେ ପରୀକ୍ଷାରେ ବେଶୀ ନମ୍ବର ମିଳିବ', ଅଧ୍ୟାପକଙ୍କ ଜଣେ ପ୍ରିୟ ଛାତ୍ର, ଛାତ୍ରୀ

ଘରେ ଠିକ୍ ବେଳାରେ ପହଞ୍ଚି କଞ୍ଚିଏ ତା ହାତକୁ ବଢ଼ାଇ ଦିଏ । ଅଧ୍ୟାପକ ହେବାପରେ ତାଙ୍କର କେତେଜଣ ଅନୁଗତ ସିନିଅର ଛାତ୍ରଙ୍କୁ ଟ୍ରେନିଂ ଦେଇଥାନ୍ତି ଛାତ୍ରୀମାନଙ୍କ ମଧ୍ୟରେ ତାଙ୍କ ସମ୍ପର୍କରେ କେତେକ ମନମତାଣିଆ ଗୁଜବ ପ୍ରଚାର କରିବା ଲାଗି ।

'ଫାଷ୍ଟକ୍ଲାସ୍ ! ଫାଷ୍ଟକ୍ଲାସ୍ ସାର୍‌ଙ୍କ ହାତରେ ମଜା । ସାର୍ ହଜଟନ୍ତ୍ର ବିଜ୍ଞାନ ବିଭାଗର ସବୁଠୁ ସିନିଅର୍ ଲେକ । ୟୁନିଭର୍ସିଟିରେ ସାର୍‌ଙ୍କର ଭଲ ନାଁ ରହିଛି । ସାର୍ ଚେଷ୍ଟା କଲେ କେଉଁ ବିଜ୍ଞାନରେ ଫାଷ୍ଟକ୍ଲାସ୍ ପାଇପାରିବେ ନାହିଁ ।' ନବାଗତ ବାଳିକା ହୃଦରେ ପଡ଼େ । ମନରେ ଜାଗିଉଠେ ଫାଷ୍ଟକ୍ଲାସ୍ ପାଇବାର ନିଶା ।

'ଆଉ ସାର୍ ଯଦି ରାଗିଯିବେନା—' ଏଇଠି ସ୍ୱର ଅପେକ୍ଷାକୃତ ମନ୍ଦ୍ରସ୍ୱରକୁ ଓହ୍ଲାଇ ଆସେ ··· 'ତାହେଲେ ଫେଲ୍ ହବା ସୁନିଶ୍ଚିତ ।'

ମେଡ଼ିକାଲ୍ କିମ୍ବା ଇଞ୍ଜିନିୟରିଂର ସ୍ୱପ୍ନ ଦେଖୁଥିବା ଛାତ୍ରଛାତ୍ରୀ-ମାନେ ହିଁ ସାଧାରଣତଃ ବିଜ୍ଞାନରେ ନାମ ଲେଖାଇଥାନ୍ତି ।

'ଝିଅ ମାଟ୍ରିକ୍‌ରେ ଭଲ କଲା । ଆଇ. ଏସ୍‌ସିରେ ଭଲ କରିବା ପ୍ରାୟ ସୁନିଶ୍ଚିତ । ତାପରେ ମୁଁ ତାକୁ ମେଡ଼ିକାଲ୍‌କୁ ପଠାଇଦେବି ।'

ଗୌରବବୋଧରେ ଛାତି ଫୁଲାଇଥିବା ବାପା ତାଙ୍କ ବନ୍ଧୁଙ୍କ ଆଗରେ ଝିଅ ସମ୍ପର୍କରେ ଏ ମନ୍ତବ୍ୟ ଦେଲାବେଳେ ଝିଅମନରେ ମଧ୍ୟ ଭବିଷ୍ୟତର ଏକ ସୁନେଲି ଚିତ୍ର ଆଙ୍କି ହୋଇଯାଏ ।

ମହାବିଦ୍ୟାଳୟର କେଉଁ କେଉଁ ଝିଅ ଆତ୍ମସମର୍ପଣର ବେଢ଼ି ଛିନ୍ନ କରନ୍ତି, କେଉଁ କେଉଁ ଝିଅ ଆଖିରୁ ଲୁହ ଗଡ଼ାଇ ବିଜ୍ଞାନରୁ ବିଦାୟ ନେଇ କଳାର ପ୍ରାଙ୍ଗଣରେ ବିଚରଣ କରନ୍ତି ତା କଲେଜର ମୂକ ମୌନ ଗବେଷଣାଗାର ଜାଣିଛି ।

ବେଳେ ବେଳେ ବନ୍ଧୁମାନେ କହନ୍ତି, 'ଅରୁଣାଭ ବାବୁ, ଆପଣଙ୍କର ଅଧ୍ୟାପକ ସମାଜରେ ଗୋଷ୍ଠୀବିବାଦ ରହିଛି ବୋଲି ଆମେ

ଶୁଣୁଛି । ଆପଣମାନଙ୍କ ଭଳି ସମାଜର ଉଚ୍ଚ ଶିକ୍ଷିତ ଲୋକେ ଯଦି ଗୋଷ୍ଠୀଗତବାଦରେ ସମସ୍ତ ନଷ୍ଟ କରିବେ, ତାହେଲେ ଆମେ ଜଛସ୍ତରେ ଆଦର୍ଶ ଆଶା କରିବୁ କାହାଠୁ ?'

ଅରୁଣାଭ ହସିଦେଲ, କହିଲେ, 'ଆଦର୍ଶଗତ ମତଭେଦକୁ ଯଦି ଗୋଷ୍ଠୀଗତବାଦର ଆଖ୍ୟା ଦିଆଯାଏ, ତାହେଲେ ଅଛେ ନାଚାର । ଯେକୌଣସି ମୂଲ୍ୟରେ ଏକତା, ଏଭଳି ସ୍ଲୋଗାନ୍‌ରେ ଅମେ ବିଶ୍ୱାସ କରୁନା । ଆମର ସ୍ଲୋଗାନ୍ ହେଉଛି, 'ମଣିଷ ସ୍ଥାନ ଏକତା ଠାରୁ ଉର୍ଦ୍ଧ୍ୱରେ ।'

ସ୍ୱୀୟ ଦୃଷ୍ଟିକୋଣରେ ସ୍ପଷ୍ଟୀକରଣ ଦେବାକୁ ଯାଇ ଅରୁଣାଭ କହିଥିଲ, 'ମନେକରନ୍ତୁ କୌଣସି ଅଧ୍ୟାପକ ଅପରାଧମୂଳକ କାର୍ଯ୍ୟରେ ଲିପ୍ତ ରହିଲେ । ଆପଣ ସେ ପରିସ୍ଥିତିରେ ତାଙ୍କୁ ସମର୍ଥନ କରିବେ ନା ବିରୋଧ କରିବେ ?

'ମୁଁ ଯଦି ଅଧ୍ୟାପକ ସମାଜଭୁକ୍ତ ହୋଇଥାଏ, ନୀରବ ରହିବି ।' ଅନ୍ୟାୟକୁ ଯେ ନୀରବରେ ସହ୍ୟ କରେ, ସେ ଅନ୍ୟାୟର ଅଂଶୀଦାର ହୋଇଯାଏ ।'

'ତାହେଲେ ଆପଣଙ୍କର ଅଭିଧାନରେ କ'ଣ ବୃତ୍ତିଗତ ସୌହାର୍ଦ୍ଦ୍ୟ ବୋଲି କୌଣସି ଜିନିଷ ନାହିଁ ?'

'ବୃତ୍ତିଗତ ସୌହାର୍ଦ୍ଦ୍ୟର ଦୋହାଇଦେଇ ଯେଉଁମାନେ ଦୁର୍ନୀତିଗ୍ରସ୍ତ ସହକର୍ମୀକୁ ସମର୍ଥନ କରୁଛନ୍ତି, ସେମାନେ ଦେଶର କ୍ଷତି କରୁଛନ୍ତି ।'

ଅରୁଣାଭ ବିରୁଦ୍ଧରେ ସବୁଠାରୁ ବଡ଼ ଅଭିଯୋଗ ଯେ ତାର କେତେକ କାର୍ଯ୍ୟକଳାପ ଅଧ୍ୟାପକ ସମାଜର ଏକତା ଉପରେ ଆଂଚ ଆଣୁଥିଲା ।

ତାର ବେପରୁଆ ମନ କୌଣସି ପ୍ରକାର ମିଥ୍ୟାଚାର କାର୍ଯ୍ୟକୁ ପ୍ରଶ୍ରୟ ଦେବାକୁ ପ୍ରସ୍ତୁତ ନଥିଲା । ଫଳରେ ଅଧ୍ୟାପକ ସମାଜର ଏକ

ଶକ୍ତିଶାଳୀ ଗୋଷ୍ଠୀ ଅରୁଣାଭର କଲେଜର ସମାଲୋଚକ ତାଲିକାରେ ନାମ ଲେଖାଇ ସାରିଥିଲେ ।

ବନଶ୍ରୀର କରୁଣ ଓ ଦୟନୀୟ ଅନୁଭୂତି ଶୁଣି ଶୁଣି ଅରୁଣାଭ ଉତ୍‌କ୍ଷିପ୍ତ ହୋଇ ଉଠିଥିଲା । ଅଧ୍ୟାପନା ଭଳି ପବିତ୍ର କାର୍ଯ୍ୟରେ ଯୋଗ-ଦେଇ ଯେଉଁ ପାଷାଣ୍ଡ ନିଜର କାମ ପିପାସାର ପ୍ରଶମନ ପାଇଁ ନିରୀହ ଝିଅମାନଙ୍କୁ ବ୍ଲାକ୍‌ମେଲ୍ କରୁଥିଲା, ତା ପ୍ରତି ଅରୁଣାଭର ମନ ବିତୃଷ୍ଣା ଓ ଅବସାଦରେ ଭରି ଯାଇଥିଲା ।

ଅଜ୍ଞାତରେ ଝିଅମାନଙ୍କର ଅଭିଯୋଗ ବଢୁଥିବାର ମହାବିଦ୍ୟାଳୟର ବାତାବରଣକୁ ଭାରାକ୍ରାନ୍ତ କରୁଛି । ସେମାନଙ୍କ ଭଳି ଅଧ୍ୟାପକମାନେ ଅଧ୍ୟକ୍ଷଙ୍କୁ ପ୍ରଭାବିତ କରି ମଧ୍ୟ ଏହି ଅଭିଯୋଗଗୁଡ଼ିକୁ ଶୀତଳ ଭଣ୍ଡାରକୁ ଠେଲି ଦେଉଛନ୍ତି ।

ନାଗାବଳୀଖିଲର ପର୍ବତଶ୍ରେଣୀ ଉପରେ ଦୃଷ୍ଟି ନିକ୍ଷେପ କରି ଅରୁଣାଭ ନିଜକୁ ପଚାରିଲା, 'ମହାବିଦ୍ୟାଳୟରେ କୁମାରୀ ନିର୍ଯ୍ୟାତନା ଅଧ୍ୟାୟର କ'ଣ ପରିସମାପ୍ତି ନାହିଁ ?'

ସେ ଦିନ ରାତି ଆଠଟାବେଳେ କଲେଜ ପରିଚାଳନା କମିଟିର ସଭାପତି ଏମ୍. ଡ଼ି. ଓଙ୍କ କକ୍ଷରେ ଝଡ଼ ଭଳି ପ୍ରବେଶ କରି ଅରୁଣାଭ ତାଗିଦ କଲା କଲେଜର ପରିଚାଳନା କମିଟି କଲେଜର ହୀନ ଓ ଗ୍ଲାନିକର ବାତାବରଣର ତୁରନ୍ତ ଅବସାନ ଘଟାଇ କୁମାରୀମାନଙ୍କର ନିରାପତ୍ତା ସୁରକ୍ଷିତ ରଖିବାର ବ୍ୟବସ୍ଥା ପ୍ରତି ସଜାଗ ଦୃଷ୍ଟି ଦେଉ ।

ସମସ୍ତ ପ୍ରକାର ଅନ୍ୟାୟ ଓ ଶୋଷଣ ପ୍ରତି ଆଲର୍ଜି ପ୍ରଦର୍ଶନ କରୁଥିବା ତରୁଣ ଅଧ୍ୟାପକ ଅରୁଣାଭ ପ୍ରତି ଆଇ. ଏ. ଏସ୍, ଏମ୍. ଡ଼ି. ଓଙ୍କ ସମ୍ମାନ ଓ ଶ୍ରଦ୍ଧା ଥିଲା କୁଣ୍ଠାହୀନ । ଅରୁଣାଭର ଆବେଗ-ଧର୍ମୀ ବ୍ୟକ୍ତିତ୍ୱ ସମ୍ପର୍କରେ ଅତିମାତ୍ରାରେ ସଚେତନ ଥିଲେ ସେ ।

ଅଧ୍ୟକ୍ଷଙ୍କ ସହଯୋଗରେ ବନଶ୍ରୀର ଅଭିଯୋଗ ସମ୍ପର୍କରେ ଏକ ଚୂଡ଼ାନ୍ତ ଅନୁସନ୍ଧାନ ସେ ସ୍ୱ ତତ୍ତ୍ୱାବଧାନରେ କରିବେ ବୋଲି ପ୍ରତିଶ୍ରୁତି ଦେଇ ସେଦିନ ଅରୁଣାଭକୁ ଆଶ୍ୱସ୍ତ କରିଥିଲେ ଏସ୍. ଡ଼ି. ଓ ଶ୍ରୀ ମହାନ୍ତି ।

ସେଦିନଠାରୁ କଲେଜର ବାତାବରଣରେ ବିଶୃଙ୍ଖଳାର ମାତ୍ରା ଅସମ୍ଭବ ଭାବରେ ବୃଦ୍ଧି ପାଇବାକୁ ଲାଗିଲା । ସେନାପତିଙ୍କ ବନ୍ଧୁମହଲ ଦ୍ୱାରା ନିଯୁକ୍ତ ଦଳେ ଛାତ୍ର ଅରୁଣାଭଙ୍କୁ ଘେରାଉ କରି ପଚାରିଲେ କଲେଜର ଅବ୍ୟବସ୍ଥାକୁ ଜନପଥ ଉପରକୁ ଆଣି ଅଧ୍ୟାପକ ଅରୁଣାଭ କଲେଜର ସୁନାମ ଉପରେ କାଳିମା ଲେପନ କରି ନାହାନ୍ତି କି ?

ସ୍ୱଭାବ ସୁଲଭ ଗାମ୍ଭୀର୍ଯ୍ୟ ସହ ଅରୁଣାଭ ଉତ୍ତର ଦେଇଥିଲେ, 'ଯେଉଁମାନେ ସ୍ୱୈରକୁ ରକ୍ଷା କରିବା ଲାଗି ସ୍ୱୈରଧର୍ମ କୌଶଳର ଔଚିତ୍ୟ ସମ୍ପର୍କରେ ତର୍କ ଉପସ୍ଥାପିତ କରନ୍ତି, ସେମାନଙ୍କପାଇଁ କୌଣସି ଜବାବ୍ ମୋର ମସ୍ତିଷ୍କକୋଷରେ ସଞ୍ଚିତ ନାହିଁ ।'

ଅରୁଣାଭଙ୍କୁ ପସନ୍ଦ କରୁଥିବା ଏକ ଛାତ୍ରଦଳ ହଠାତ୍ ସେ ସ୍ଥାନରେ ପହଞ୍ଚିବାରୁ ଘେରାଉ କରିଥିବା ଛାତ୍ରମାନେ ଦ୍ରୁତ ପଦକ୍ଷେପରେ ସେ ସ୍ଥାନ ତ୍ୟାଗ କରିଥିଲେ ।

ବନଶ୍ରୀର ଅଭିଯୋଗକୁ ସମର୍ଥନ କରି ଛାତ୍ରୀ ମହଲରେ ଅଗ୍ନିର କଣିକା ଛିଟ୍ରି ରହିଥିଲା କିମ୍ବା ନାହିଁ । ଫଳରେ ଅଧ୍ୟକ୍ଷଙ୍କ ଆସନ ସମ୍ମୁଖରେ ଲମ୍ଫି ପାଇଥିବା ଉତ୍ତ୍ୟକ୍ତା ଛାତ୍ରୀମାନଙ୍କର ଏକ ବିଶାଳ ଧାଡ଼ି କଲେଜ ବରଣ୍ଡାକୁ ବର୍ଣ୍ଣିଳ ଓ ଶବ୍ଦପୂର୍ଣ୍ଣ କରିଦେଇଥିଲା ।

ଯେତେବେଳେ ସେନାପତିଙ୍କ ବନ୍ଧୁମହଲଦ୍ୱାରା ଆହୂତ ଏକ ଅଧ୍ୟାପକ ସଭାରେ ସମର୍ଥନ ଜ୍ଞାପକ ପ୍ରସ୍ତାବ ଧାର୍ଯ୍ୟ କରିବାକୁ ଉଦ୍ୟମ କରାଗଲା, ଅରୁଣାଭ ତାର ତୀବ୍ର ପ୍ରତିବାଦ କରି କହିଥିଲେ, 'ଅପରାଧୀକୁ ଘଣ୍ଟଘୋଡ଼ାଇବା ଶିକ୍ଷକ ସଂଘ ଭଳି ସମ୍ମାନିତ ଅନୁଷ୍ଠାନର କାର୍ଯ୍ୟ ନୁହେଁ ।

ଅଜସ୍ର ଅର୍ଥର ବିନିଯୋଗ, ପରିଚାଳନା କମିଟି ସଭ୍ୟମାନଙ୍କ ଉଦାସୀନତା, ରାଜନୈତିକ ହସ୍ତକ୍ଷେପ ଅଧ୍ୟାପକ ସେନାପତିଙ୍କୁ ସେଥର ନ୍ୟାୟବାନ ଏସ୍‌ଡ଼ିଓଙ୍କ ହାତରୁ ରକ୍ଷା କରିଦେଇଥିଲା ।

*

ଏକଦା ସମୃଦ୍ଧ କାଶୀପୁର ଆଜି ହତଶ୍ରୀ ।

ସଭ୍ୟତା ଓ ଜନ୍ମସ୍ଫୁନର ଦଂଶନରେ କାଶିପୁରର ଜଙ୍ଗଲ ବୃକ୍ଷଶୂନ୍ୟ ।

କୁଳବୃଦ୍ଧିର ହୋମ ଅଗଣିତ କାଶୀପୁରର ସନ୍ତାନ ଅନ୍ନପ୍ରୁ ଖୋଜନ୍ତି ରାୟଗଡ଼ର ରାସ୍ତାଧାରରେ, ନର୍ଦ୍ଦମା କଡ଼ରେ ।

ରାୟଗଡ଼ର ଗତ ଏକଶହ ବର୍ଷର ଇତିହାସ କହୁଛି କିଭଳି ଆଇନକୁ ଧର୍ଷଣ କରି ବିପୁଳ ସରକାରୀ ଜମି ହସ୍ତଗତ କରିଛନ୍ତି ଧୂର୍ତ୍ତ ଧନୀ ବହିରାଗତମାନେ ।

ଆଦିବାସୀର ମଙ୍ଗଳ ପାଇଁ ବହ୍‌ଷ୍ଟାଣ୍ଡ୍‌ର ସପକ୍ଷରେ ଅଶ୍ରୁପାତ କରୁଥିବା ବିଭିନ୍ନ ରାଜନୈତିକ ଦଳର ନେତାମାନେ ଏ ସମ୍ପର୍କରେ ନୀରବ ।

ଅନ୍ୟ କୌଣସି ଉପାୟ ନପାଇ ସରକାରୀ ଜମି ଜବର-ଦଖଲ କରି ସେଥିରେ କେଇଗୋଟି ଆଦିବାସୀ ପରିବାରକୁ ଗୃହନିର୍ମାଣ କରିବାର ସୁଯୋଗ ଦେଇଥିଲା ଅରୁଣାଭ ।

'ଅରୁଣାଭ ଦୋଷୀ ! ଅରୁଣାଭ ଆଇନ ଭଙ୍ଗ କରିଛି ।' ଚିତ୍କାର କରି ଉଠିଲେ ଭାଗ୍ୟବାନ୍ ଲୋକମାନେ ।

'ବେଆଇନ୍ ଭାବରେ ତିଆରି ସମସ୍ତ ଘର ଭାଙ୍ଗି ଦିଆଯାଉ,' ପ୍ରସ୍ତାବ ଧାର୍ଯ୍ୟ କଲେ କ୍ଷୁବ୍ଧ ନଗରପିତା ଦଳ । ସରକାରୀ ଜମି ଉପରେ ପୂର୍ବରୁ ଲୋଲୁପ ଦୃଷ୍ଟି ରଖିଥିବା ମନ୍ତ୍ରୀଙ୍କ ପାର୍ଶ୍ୱଚରମାନେ ଗର୍ଜିଉଠିଲେ ଉତ୍ପଳ ଚର୍ମ ଭଳି ।

ଚନ୍ଦ୍ରକାନ୍ତ୍‌ର ସଙ୍ଗରେ ସଦ୍ଭାବ କରିଥିଲା ଅରୁଣାଭ 'ଅନେକର ହାତ ଦେଇ କେତେଜଣ ଆଦିବାସୀଙ୍କୁ ଲୁଣ୍ଠନ କରି ଚଳୁଥିବେ ଏ ଦେଶର ବଡ଼ଲୋକମାନେ ? ଆଜ ଆଇନ ବଡ଼ଲୋକଙ୍କ ଗେଟ୍‌ ପାଖରେ ଧକଉଛି ଆଉ ଗରିବ ଦେଖିଲେ ଖେ ଖେ କରୁଛି ।

ସହରର ମୁଖ୍ୟ ରାସ୍ତାଧାରରେ ଯେଉଁ ସୁଦୃଶ୍ୟ ବିରାଟ ବିରାଟ ପ୍ରାସାଦଗୁଡ଼ିକ ମୁଣ୍ଡ ଟେକିଛି, ସେଗୁଡ଼ିକ ଯେ ସରକାରୀ ଜମି ଉପରେ ଅବସ୍ଥିତ, ତାହା ଭୁଲିଯାଉଛନ୍ତି ସୁଯୋଗ୍ୟ ନଗରପିତାମାନେ ।'

ମନ୍ତ୍ରୀଙ୍କ ନେତୃତ୍ୱରେ ବାରମ୍ବାର ଉଦ୍ୟମ ହୋଇଛି ଆଦିବାସୀଙ୍କୁ ବାସଚ୍ୟୁତ କରିବାପାଇଁ ।

ତହସିଲ୍‌ଦାର, ମ୍ୟୁନିସିପାଲିଟି କାର୍ଯ୍ୟାଳୟ ଅଫିସର୍‌ ବହୁଥର ନୋଟିସ୍‌ ଦେଇଛନ୍ତି ଆଦିବାସୀର ଘର ଭାଙ୍ଗିଦବାପାଇଁ, ପ୍ରତିରୋଧ କରିଛି ଅରୁଣାଭ । ବିଦ୍ରୋହୀ ଆଦିବାସୀର ପଦତଳରେ ପଦଦଳିତ ହୋଇ ଯାଉଛି ସପୁଗଡ଼ର ମୁଖ୍ୟରାସ୍ତାଗୁଡ଼ିକ ।

ପଦଦଳିତ ହୋଇ ଉଠିଛନ୍ତି ମନ୍ତ୍ରୀ, ଦୁର୍ନୀତିଗ୍ରସ୍ତ ପ୍ରଭାବଶାଳୀ ଲୋକମାନେ । ଅରୁଣାଭ ଚକ୍ଷୁରେ ଭବିଷ୍ୟତର କୁହେଳି ସାନ୍ଦ୍ର ଦେଖାଇବାରେ ଲାଗିଛି ।



ଉତ୍ତର ଆକାଶରେ ଧୂମ୍ର କୁଣ୍ଡଳୀ ।

ଯନ୍ତ୍ରଦାନବର ଉଷାକ୍ତ ନିଶ୍ୱାସ ଅନବରତ ଆଘାତ କରୁଛି ସେ ଦିଗର ବପୁଗଡ଼ର ଶୁଭ୍ର ଚନ୍ଦ୍ରଶ୍ରୀକୁ ।

କାଗଜ କଳ ଭଲ୍ଲାରେ ଓଡ଼ିଆଭାଷା ଅପ୍ରଧାନ । ଓଡ଼ିଆ ମାଟି ପୁତ୍ର କୃତଘ୍ନ ନେତା ଓ ଅଫିସର୍‌ମାନେ ଉଦ୍ଧୂଜନକ ବଲ୍ଲୀ ନନ୍ଦମାଙ୍କର ସେବା କଲାଭଳି ଏ କାଗଜକଳ କାମଧେନୁର ସେବା କରି ଆସିଚନ୍ତି ବର୍ଷ ବର୍ଷ ଧରି ।

ବପୁଗଡ଼ର ପଶ୍ଚିମରେ ଚନ୍ଦକଳ । ବପୁଗଡ଼ ଡୋଗପୂଠ ମୁଖ୍ୟ ରାସ୍ତା ଠିକ୍ ଚନ୍ଦକଳକୁ ଛଡି ହୋଇ ଚାଲିଯାଇଛି ଆହୁରି ପଶ୍ଚିମକୁ ।

ଆରମ୍ଭ ହେଲା ଏଇଠାରୁ ଚନ୍ଦକଳର ପ୍ରଶସ୍ତ ଚତ୍ୱରରେ ଓଡ଼ିଆ ଶବ୍ଦ ଶୁଣାଯାଇନି । ଏଠାର ସମସ୍ତ କର୍ମଚାରୀ ଆନ୍ଧ୍ର ପ୍ରଦେଶର ।

ଚନ୍ଦକଳର ଠିକ୍ ପାଦ ପାଖରେ ଆଜ୍ଞାବହ ଅନୁଚର ଭଳି ଦଣ୍ଡାୟ-ମାନ ଫେରୋ-ମାଙ୍ଗାନିଜ କାରଖାନା । ଏ କାରଖାନାର ପରିସର ମଧ୍ୟ ଏକ ଦୁଃସ୍ୱପ୍ନ ଭଳି ଆରମ୍ଭରୁ ତ୍ୟାଗ କରି ଆସିଛି ଓଡ଼ିଆ ଭାଷା ଓ ଚଳଣିକୁ ।

ବହୁ ପରିବାର ଆନ୍ଧ୍ରରୁ ଯାଯାବରର ମୂର୍ତ୍ତିଧରି ବପୁଗଡ଼ ଆସି ସୁଖୀ ଓ ସମୃଦ୍ଧ ହୋଇପାରିଚନ୍ତି ଚନ୍ଦକଳର ପ୍ରସାରିତ ହସ୍ତର ଛାୟା ଲାଭ କରି । ଦୂରଦୃଷ୍ଟିସମ୍ପନ୍ନ ଚନ୍ଦକଳର ପ୍ରତିଷ୍ଠାତାମାନେ ଏକ ବିରାଟ ଭୂଖଣ୍ଡରେ ପ୍ରତିଷ୍ଠିତ କରିଛନ୍ତି ଆନ୍ଧ୍ରରୁ ଆଗତ ଚାଷୀ ଓ କର୍ମଚାରୀ-ମାନଙ୍କୁ ।

ସପ୍ତଗଡ଼ର ଦକ୍ଷିଣରେ ଅବସ୍ଥିତ ଦେବୀ ମଟ୍ଟିଘରଆଣୀଙ୍କ ମନ୍ଦିର ଆନ୍ଧ୍ର ଓ ଓଡ଼ିଶାର ଭକ୍ତମାନଙ୍କୁ ଆକୃଷ୍ଟ କରି ଆସିଛି ଯୁଗ ଯୁଗ ଧରି ।

ଦେବୀ ମଟ୍ଟିଘରଆଣୀଙ୍କ କ୍ଷମତା ଅଖଣ୍ଡ ଓ ଅପ୍ରତିହତ । ମନ୍ଦିରର ଅଦୂରରେ ଅବସ୍ଥିତ ପ୍ରସିଦ୍ଧ ୧୯ର ନଆଖୋଲର ଜାତ ଶୁଭ୍ର ଜଳ ରେଳୱେ, ଭଲେନକୁ ଯୋଗାଇ ଦିଅନ୍ତି ପ୍ରକାଣ୍ଡ ପ୍ରକାଣ୍ଡ ବିଦ୍ୟୁତ୍‌ଚାଳିତ ଯନ୍ତ୍ରମାନେ ।

କମ୍ବଦନ୍ତୀର ଗଭୀର ଜଙ୍ଗଲରେ ମଟ୍ଟିଘରଆଣୀ ଠାକୁରାଣୀଙ୍କ ଜନ୍ମଗାଥା ଓଡ଼ିତ । ଅଜ୍ଞାତର କେଉଁ ଏକ ଶୁଭ୍ର ପ୍ରଭାତରେ ଜଣେ ଭାରତବର୍ଷୀ ଇଞ୍ଜିନିୟର୍ ଆବିଷ୍କାର କରନ୍ତି ଏହି ଦେବୀଙ୍କର ଅଲୌକିକ ମାହାତ୍ମ୍ୟକୁ । ସପ୍ତଗଡ଼ର ଉତ୍ତୁଙ୍ଗ କନ୍ୟା ଝଞ୍ଜାବାତ ଶିଖରର ଦୁର୍ଗ-ସ୍ଥଳରେ ପାଦ ଥାପି ଦଣ୍ଡାୟମାନ ହୋଇଥିବା ଭାରତର ଏକ ଅତ୍ୟୁଚ୍ଚ ରେଳୱେ, ତା'ର ଜନ୍ମଦାତା ଏହି ଇଞ୍ଜିନିୟରଙ୍କର ସମସ୍ତ ଜନ୍ମବିଘ୍ନତାର ଅବସାନ ଘଟେ ଦେବୀଙ୍କର କରୁଣା ଲାଭ କରି, ଏବଂ ତାପରେ ପରେ ବାତ୍ୟା କମ୍ପା କନାଗିନ ଭଳ ବହୁମୁଖରେ ଉଚ୍ଚାରିତ ହୋଇପଡ଼େ ଏହି ଦେବୀଙ୍କର ଗୌରବ ଗାଥା ।

ମଟ୍ଟିଘରଆଣୀଙ୍କ ମନ୍ଦିର ନିକଟରେ ଅବସ୍ଥିତ ସତୀ କୁଣ୍ଡ କୌଣସି ଏକ ପବିତ୍ର ଅଥଚ ଦୁଃଖ ଦାୟକ ସ୍ମୃତିର ଉଦ୍ରେକ କରାଏ । ଅନ୍ୟ ଏକ ଯୁଗର ଅନ୍ୟ ଏକ ସପ୍ତଗଡ଼ର, ଏକ ସମ୍ପନ୍ନ, ଶକ୍ତିଶାଳୀ ତଥା କାର୍ଯ୍ୟଦକ୍ଷ ରାଜପୁରୁଷଙ୍କର ରକ୍ତରଞ୍ଜିତ ମୃତ୍ୟୁ ଘଟିବା ପରେ ତାଙ୍କର ପତ୍ନୀମାନେ ସାହସ ବଦନରେ ଆଲିଙ୍ଗନ କରିଥିଲେ ଅଗ୍ନିକୁଣ୍ଡସ୍ଥ ମୃତ୍ୟୁଦେବତାଙ୍କୁ । ଚରିତ୍ର ଓ ଚନ୍ଦ୍ରାଳ ଜନତା ସେହିଦିନଠାରୁ ପୂଜାକରି ଆସିଛି ସେହି ପବିତ୍ର କୌମାରୀଙ୍କୁ ଓ ଦେବୀର ଆସନରେ ଉପବିଷ୍ଟ କରିଛି ରାଜାଙ୍କର ରୂପବତୀ ତଥା ଗୁଣବତୀ ମହିଷୀମାନଙ୍କ ମଧ୍ୟରେ ସର୍ବଜନପ୍ରିୟ ଓ ସର୍ବଶ୍ରେଷ୍ଠ ମଟ୍ଟିଘରଆଣୀଙ୍କୁ ।

ଅସଂଖ୍ୟ କୁକ୍କୁଟଙ୍କର ପର ଓ ଛାଗଙ୍କର ହାଡ଼ ମଟ୍ଟିଘରଆଣୀ ମନ୍ଦିର ଚତୁର୍ଦ୍ଦିଗରେ ସୃଷ୍ଟି କରିଛି ଶ୍ମଶାନର ବାତାବରଣ । ଲେଞ୍ଜ ଓ

ସ୍ୱାର୍ଥପର ମଣିଷ ଜନ୍ମା ନିଜସ୍ୱାର୍ଥ ବଶବର୍ତ୍ତୀ ହୋଇ ନିର୍ମମ ଭାବରେ ଶେଷ କରିଚାଲିଚି ପଶୁ ଓ ପକ୍ଷୀ ଜଗତକୁ । ମନର କେଉଁ କୋମଳତମ ଅଂଶରେ ଉଠୁଥିବା ବିବେକର ପ୍ରତିବାଦ ସ୍ୱରକୁ ନୀରବ କରିଦେବାପାଇଁ ସେ ଆବିଷ୍କାର କରିଚି ଧର୍ମଭଳି ଏକ ଅଦ୍ଭୁତ ଦ୍ରବ୍ୟକୁ ।

ଯେଉଁ ହୃଦ୍ କଣ୍ଠରୁ ମେଘମନ୍ଦ୍ର ସ୍ୱରରେ ପ୍ରଚାରିତ ଶୁଚି ସ୍ନିଗ୍ଧ ସମୀରଣରେ ଭାସିଆସେ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ'ର ଯୁଗାନ୍ତକାରୀ ବାଣୀ', ସେହି ହୃଦ୍ କୌଣସି ଏକ ଭେଦଧର୍ମୀ ମୁହୂର୍ତ୍ତରେ ଦେବୀ ନାମରେ ହତ୍ୟା କରି ବସେ ନିଷ୍ପାପ ଛାଗଳ ବା କୁକ୍କୁଟକୁ ।

ପୃଥିବୀରେ ଧର୍ମ ନାମରେ ଯେତେ ହତ୍ୟା ଓ ଲୁଣ୍ଠନ ସଙ୍ଘଟିତ ହୋଇଛି, ତାକୁ ଲକ୍ଷ୍ୟ କରି ବିଶ୍ୱବିଖ୍ୟାତ ଦାର୍ଶନିକ ବାର୍ଟ୍ରାଣ୍ଡ୍ ରସେଲ୍ ଅଶ୍ରୁଳ ଆବେଦନ ଲିପିବଦ୍ଧ କରିଦେଇଚନ୍ତି ତାଙ୍କର ନୋବେଲ୍ ପୁରସ୍କାର ବିଜୟୀ 'ମୁଁ କାହିଁକି ଖ୍ରୀଷ୍ଟିୟାନ୍ ନୁହେଁ' ଗ୍ରନ୍ଥଟିରେ ।

ଅରୁଣାଭ ନିବିଡ଼ ଭାବରେ ଭଲପାଇ ବସିଚି ସପୁଗଡ଼କୁ । ସପୁଗଡ଼ର ପାଣି, ପବନ ସବୁ କିଛି ହୋଇଉଠିଚି ତା ପକ୍ଷରେ ସ୍ୱାଦ୍ୟ, ଲୋଭନୀୟ ।

ସପୁଗଡ଼ ପାର୍ବତ୍ୟଭୂମିର ବକ୍ଷାଧାରରେ ଗୋଟିଏ ଜନପଦର ଅଞ୍ଚଳରେ ଅବସ୍ଥିତ ଏକ ମନ୍ଦିରରେ ବାସ କରନ୍ତି ଓଡ଼ିଆ ଜାତିର ଆରାଧ୍ୟ ଦେବତା ଜଗନ୍ନାଥ । ସପୁଗଡ଼ରେ ଓଡ଼ିଆ ଜାତି ଓ ଜାତିର ଠାକୁରାଣୀଙ୍କର ଦୁରବସ୍ଥା ସମତାଳରେ ଗତି କରିଚି । ପ୍ରବଳ ଜନଗହଳି ମଧ୍ୟରେ, ମହିଷମର୍ଦ୍ଦିନୀଙ୍କ ଜୟ ଜୟକାର ଯେତେବେଳେ ଅଦୂର ପାହାଡ଼ର ନିଦ୍ରାଭଙ୍ଗ କରୁଥାଏ, ଦେବାଧିଦେବ ଜଗନ୍ନାଥଙ୍କ ମନ୍ଦିରର ଗରୁଡ଼ ସ୍ତମ୍ଭର ପରିବେଶକୁ ସାଉଁଳୁଥାଏ ନିର୍ଜନତା ଓ ନୀରବତାର ସ୍ନିଗ୍ଧ ଶୀତଳ ହସ୍ତ ।

ଅରୁଣାଭ ବହୁତ ଭଲପାଏ ଜଗନ୍ନାଥ ମନ୍ଦିରର ନିର୍ଜନ ବାତାବରଣକୁ ।

ମାର୍ଚ୍ଚର ଏକ ମନମତାଣିଆ ନାତିଶୀତୋଷ୍ଣ ସନ୍ଧ୍ୟା । ପବନ ବହୁଚି ଅବକ୍ରମଗତିରେ ମନ ଓ ପ୍ରାଣ ପାଇଁ ପୁଲକର ବାର୍ତ୍ତା ନେଇକରି । ଅରୁଣାଭ ଏକାକୀ ଉପବେଶନ କରିଚି ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ ସ୍ୱପ୍ନ ଓ ଆଶାମାନଙ୍କର ସ୍ୱେମନ୍ଥନ କରିବାର ଆକାଙ୍କ୍ଷା ନେଇ । ହଠାତ୍ ଅରୁଣାଭକୁ ପୁଲକିତ ଓ ଚକିତ କରି ବୀଣାଜିଣା କଣ୍ଠରୁ ସ୍ୱାଗତିକା ବୋଲି ଆସିଲା ।

'ନମସ୍କାର ସାର୍ ।'

'ଜପ୍ସା, ତମେ ଏଠି ?'

'କାହିଁକି ? ଜଗନ୍ନାଥ କ'ଣ କେବଳ ଆପଣମାନଙ୍କର ?'

'ଜଗନ୍ନାଥ ତ ସାରା ଜଗତର । କିନ୍ତୁ ଜଗନ୍ନାଥ ମନ୍ଦିରରେ ତମର ଉପସ୍ଥିତି ମୋ ପକ୍ଷରେ ଥିଲା ଅପ୍ରତ୍ୟାଶିତ ।'

'ଅପ୍ରତ୍ୟାଶିତ କ'ଣ ପ୍ରତ୍ୟାଶିତର ସୀମା ଭିତରକୁ କେତେବେଳେ ଚାଲି ଆସେନା । ଠିକ୍ ଯେମିତି… '

'ଠିକ୍ ଯେମିତି ?'

'ଠିକ୍ ଯେମିତି ପୃଥିବୀକୁ ଜନ୍ମଦେବାପାଇଁ ଏବେ ଦୁଇଟି ତାରା ପରସ୍ପର ନିକଟବର୍ତ୍ତୀ ହେଲେ କିମ୍ବା ପୃଥିବୀରେ ଜୀବନର ସାହାନାଇ ବଜାଇବାପାଇଁ କାର୍ବନ୍, ହାଇଡ୍ରୋଜେନ୍, ଅମ୍ଳଜାନ ପଦାର୍ଥମାନେ ଏକ କ୍ରମପ୍ରସାରଣଶୀଳ ପରିବାର ସୃଷ୍ଟି କଲେ ।'

'ତମେ କ'ଣ ବିଜ୍ଞାନର ଛାତ୍ରୀ ?'

ଏକଦା କେମିଷ୍ଟ୍ରି ଲ୍ୟାବରେଟରୀର କରିଡ୍‌ରେ ଶାଢ଼ି ଟୋଉଥିଲି; ଆଜିକାଲି ଆଉ ସେ ସୌଭାଗ୍ୟ ମୋର ନାହିଁ ।'

'ବସ ଜପ୍ସା ! ତମ କଥାଗୁଡ଼ିକ ଖରାଭଳି ତୀକ୍ଷ୍ଣ ହେଲେ ବି ସେଥିରେ ରସାଳ ଚଟୁଳତାର ଅଭାବ ନାହିଁ ।'

'ଆଜି ଏଠି କିଛି ସମୟ ବସିଗଲେ ଭାଲି ସହରର କାନ୍ଦବାଡ଼କୁ ଆଉ ଆପଣ ବୁଝି ପାରିବେ ନାହିଁ ।'

ହଠାତ୍ ଅରୁଣାଭର ମନେ ପଡ଼ିଗଲା ଅତୀତର ସେହି ଏକ ସ୍ମରଣୀୟ ଘଟଣାର କଥା । ଅରୁଣାଭ ବସ୍ତିଘରେ ଅପ୍ରତ୍ୟାଶିତ କହୁଥିବା ଗୁଣ୍ଡାଲେଖାମାନଙ୍କର ଷଡ଼ଯନ୍ତ୍ର ଫାନ୍ଦ ଭେଦିଥିଲା ଏକାକିନୀ ଜସ୍ମା ।

'ବାସ୍ତବିକ୍ ଜସ୍ମା ! ତମେ ସେଦିନ ଅଦ୍ଭୁତ ବୀରାଙ୍ଗନାର ସାହସ ଦେଖାଇ ନଥିଲେ ହୁଏତ 'ଗର୍ଜନଶୀଳ ରଙ୍ଗଣା' ଛାଡ଼ିଲା ଜାହାଜ ଭଳି ମୁଁ ଏବେ ମଧ୍ୟ ଅଣ୍ଟାର୍କଟିକା ସାଗରରେ ଆଶ୍ରୟ ଖୋଜି ବୁଲୁଥାନ୍ତି ।'

'ଆପଣଙ୍କ ଭଳି ସୁଦକ୍ଷ କପ୍ତାନ ଚାଳିତ ଜାହାଜ ମଣ୍ଡପ ଏକ ନିରାପଦ ବନ୍ଦରରେ ଲଙ୍ଗର ପକାନ୍ତା, କେବଳ ଆମ ଭଳି କେତେଜଣ ଗୃହ ଛାଡ଼ି ହରାଇବାର ଦୁଃଖରେ ଉଡ଼ନ୍ତା ଝାଡ଼ ଝାଡ଼ ନିଃଶ୍ୱାସ ଆକାଶକୁ ଅନ୍ତର ବେଦନାପ୍ଲୁତ କରିଥାନ୍ତୁ ବନ୍ଧୁବର ।'

'ତମକୁ ଏଠାରେ ଅନୁରୋଧ କରି ବସାଇଦେବାକୁ ପ୍ରକୃତରେ ମୋର ସାହସ ନାହିଁ ଜସ୍ମା; ଏ ସମାଜରେ କାଚଘର ଭଳି ନିର୍ମିତ ନାରୀର ଇଜ୍ଜତକୁ ଚୂରମାର କରିଦେବାକୁ ଟେକା ପକାଇବା ଲୋକଙ୍କର ଅଭାବ ନାହିଁ ।'

ଜସ୍ମାର ଚକ୍ଷୁରେ ଅଗ୍ନି ଜଳି ଉଠିଥିଲା ।

'ଯେଉଁ ସମାଜର ସମ୍ମାନ ମାପକାଠିରେ ଶ୍ରେଷ୍ଠ ସ୍ଥାନ ପାଇଥାଏ । କଳାବଜାରୀ ଓ ଭ୍ରଷ୍ଟାଚାରୀ; ସେଇ ସମାଜର ମତାମତକୁ ସମ୍ମାନ ଦେବାର ମନୋବୃତ୍ତି ମୁଁ ଅତିକ୍ରମ କରି ସାରିଛି ସାର୍ ।'

ଅରୁଣାଭ ଚମକି ପଡ଼ିଥିଲା । ଜସ୍ମାର ଭାଷା ଥିଲା ଠିକ୍ ତାର ଅନ୍ତରର ଭାଷା । ଏକ ମଧୁର ବେଦନା ତାର ହୃଦୟକୁ ଶିହରେଇ ଦେଇଥିଲା ।

'ତାହାରୁ ଆପଣଙ୍କୁ ଦେଖି ଆପଣଙ୍କ ସହ କଥାବାର୍ତ୍ତା ହେବାର ଲୋଭରେ ମୁଁ ଏକାକିନୀ ଏ ଘରକୁ ଚାଲି ଆସିଥିଲି ସାର୍ ।'

ଜସ୍ମା ଏକ ସ୍ୱଚ୍ଛ‌ଛାୟା ଝରଣା । ଛଳନାର କର୍ଦ୍ଦମରେ ତାର୍ ଜଳ ଆବିଳ ହେବାର ସମସ୍ତ ସମ୍ଭବତଃ ଆସିନାହିଁ ।

ଆଃ ଜସ୍ମା ! ତମେ ଏ କ'ଣ କହ ? କୁହାର ହାଇଡ୍ରା ତାର ସହସ୍ର ଚକ୍ଷୁ ତମ ଉପରେ ଯେ କେନ୍ଦ୍ରିତ କରିଛି, ତା କ'ଣ ତୁମେ ଭୁଲିଗଲ ?

'ମୋର ଉପସ୍ଥିତି ଆପଣଙ୍କୁ ଅସୁବିଧା ଜନକ ପରିସ୍ଥିତି ମନେ ହେଉଥିବ ସାର୍ । ବଦ୍‌ନାମକୁ ଆପଣ ପରିସ୍ଥିତି ଡରୁଥିବେ, ମୁଁ ଏଥର ଯାଉଛି ।'

'ବଦ୍‌ନାମ୍ ମୋର ଚିର ସଙ୍ଗୀ, ଜସ୍ମା । ମୁଁ କେବଳ ତମ କଥା ଭାବି ବିଚଳିତ ହୋଇପଡ଼ୁଛି ।'

'ବହୁଦିନରୁ ଇଚ୍ଛାଥିଲା ଆପଣଙ୍କ ସହ ସାହିତ୍ୟ ଆଲୋଚନା କରିବି । ପୃଥିବୀର ବିଭିନ୍ନ ଜଗତରେ ଯେଉଁ ଜ୍ୟୋତିଷ୍କମାନଙ୍କର ଆବିର୍ଭାବ ମଣିଷର ଗତିପଥକୁ ସରଳ ଓ ଊର୍ଦ୍ଧ୍ୱଗାମୀ କରିଛି, ସେଇ-ମାନଙ୍କ ଆଲୋକ ଆପଣଙ୍କ ମସ୍ତିଷ୍କର କନ୍‌ଭେକ୍ସ ଲେନ୍ସ ସାହାଯ୍ୟରେ କେନ୍ଦ୍ରୀଭୂତ କରିବି । କିନ୍ତୁ ...'

'କିନ୍ତୁ... ?'

'କିନ୍ତୁ ସଙ୍କୋଚର ସଙ୍କୀର୍ଣ୍ଣ ଗିରିପଥ ଓ ବଦ୍‌ନାମ୍‌ଭୟର ଆମାଜାନ୍ ନଦୀ ଅତିକ୍ରମ କରିବାକୁ ମୋତେ ବହୁଦିନ ଲାଗିଗଲା ।'

ଅରୁଣାଭ ନୀରବ ଥିଲା । ଜସ୍ମା କର୍ଦ୍ଦମରେ ଠିକ୍ ତାର ସାମନାରେ ବସି ଯାଇଥିଲା ।

ଚନ୍ଦ୍ରିକ ଏବଂ ସଗ୍ରାମର ବନ୍ଧଘର ଉପରେ ଅବିରତ ଦୃଷ୍ଟି କେନ୍ଦ୍ରିତ କରୁଥିବା ଅରୁଣାଭ ମନେ କରୁଥିଲା ସତେ ଯେମିତି ତାର ଅଜାଣତରେ ଏକ ନାଗକେଳି ତମାଳ ବେଷ୍ଟିତ ରମ୍ୟ ଦ୍ୱୀପରେ ତାର ଜାହାଜ ନଙ୍ଗର ପକାଇ ସାରିଛି ।

ଜୀବନରେ ପ୍ରଥମଥର ପାଇଁ ଅରୁଣାଭର ମନ ଓ ହୃଦୟ ଏଭଳି ବେଦନାଭରା ମଧୁରତାଯୁକ୍ତ ସ୍ନିଗ୍ଧତା ଓ ଶୀତଳତାର ସ୍ପର୍ଶ ପାଇଥିଲା । ଏକ ଅନବଚ୍ଛିନ୍ନ ମାଧୁର୍ଯ୍ୟ ତାର ଶରୀରର କୋଣ ଅନୁକୋଣକୁ ପ୍ଲାବିତ କରି ସାରିଥିଲା । ଅରୁଣାଭର ମନେ ହେଉଥିଲା ସେ ଯେପରିକି ବର୍ଷୁକ ମେଘର ବକ୍ଷ ଭେଦକରି ସୀମାହୀନ ଆକାଶରେ କେଉଁ ଅଜ୍ଞାତ ଦେଶଆଡ଼େ ନିଜ ଅଜାଣତରେ ଉଡ଼ିଉଡ଼ି ଚାଲିଛି ।

ପ୍ରଗଲ୍‌ଭ ଜୟା ହଠାତ୍ ମୂର୍ତ୍ତି ପରି ଛବି ଭଳି ନିସ୍ତବ୍ଧ ହୋଇଯାଇଥିଲା । ଏକ ନିଷ୍ଠୁର ସତ୍ୟର ପ୍ରବଳ ଆଘାତରେ ତାର ବାକ୍‌ରୋଧ ହୋଇସାରିଥିଲା ।

ଜୟା ବିଶ୍ୱାସ କରିପାରୁ ନଥିଲା ଯେ ତାର ହୃଦୟର କେଉଁ ନିଭୃତ କନ୍ଦରରେ ଭଙ୍ଗାଗଢ଼ାର ମିସ୍ତ୍ରୀମାନେ ସେମାନଙ୍କ କାମ ଆରମ୍ଭ କରିସାରିଥିଲେ ।

ଜୀବନରେ ପ୍ରଥମଥର ପାଇଁ ପୁଲକ, ବିସ୍ମୟ ଓ ଅହଙ୍କାର ମିଶ୍ରିତ ଆକ୍ରମଣ ଜୟାକୁ ବିଚଳିତ କରିଦେଇଥିଲା ।

ଉପଲବ୍‌ଧିର ମୁହୂର୍ତ୍ତଗୁଡ଼ିକ ମଧୁର, ବେଦନାକ୍ତ ଓ ନିର୍ମମ ଥିଲେ । ଜୟା ବିନା ବାକ୍ୟବ୍ୟୟରେ ସ୍ଥାନ ତ୍ୟାଗ କଲାବେଳେ ଏକ୍ ଷମଧରଣର ଅସହାୟବୋଧ ଯୋଗୁଁ ସ୍ତବ୍ଧ ଅରୁଣାଭ ନିସ୍ପନ୍ଦ ଓ ନିର୍ବାକ୍ ଭାବରେ ବସି ରହିଥିଲା ।

ସର୍ବବାଗୀଶ ଦଳ ବିଧିନିଷେଧର ପ୍ରାଚୀର ବେଷ୍ଟିତ ଯେତେ ପ୍ରାଚୀର ସୃଷ୍ଟି କରନ୍ତୁନା କାହିଁକି; ତାରୁଣ୍ୟତାର କଳକଳ ଧ୍ୱନି ସହ ସେ ସମସ୍ତ ପ୍ରାଚୀର ଭେଦ କରି ମୁକ୍ତ ପବନକୁ ସ୍ୱାଗତ କରିବ ନିଶ୍ଚୟ ।

ଅରୁଣାଭ ବିଚଳିତ ଥିଲା କାରଣ ଏକ ଅନାସ୍ୱାଦିତ ପୁଲକ ଓ ଅନୁଭୂତି ତାର ଅନ୍ତରକୁ ଆଚ୍ଛନ୍ନ କରି ତାକୁ ଏକ ଅଜଣା ପଥର ପଥିକ କରାଇ ଯାଉଥିଲା ।

ବସନ୍ତ ଯେଉଁ ଦ୍ୱାରରେ କେତେଥର କରାଘାତ କରି ଫେରିଯାଇ-ଥିଲା; ସେହି ଦ୍ୱାର ସହସା ଉନ୍ମୁକ୍ତ ହେବାଫଳରେ ତାର ସମସ୍ତ ଐଶ୍ୱର୍ଯ୍ୟ ସହ ବସନ୍ତ ଅଭ୍ୟନ୍ତରରେ ପ୍ରବେଶ କରିସାରିଥିଲା ।

ଅରୁଣାଭ ମନ୍ଦିରରୁ ବିଦାୟ ନେଲାବେଳେ ତାଦେମ୍ନାର ତା ମସ୍ତିଷ୍କରେ ପ୍ରତିଧ୍ୱନିତ ହେଉଥିଲା ଭଲୁ ପ୍ଲେଟୋଙ୍କର ଏକ ଅମର ପଂକ୍ତି ।

'ତମ ଘରର ଷର୍ଥବାସୀ ଆମ୍ଭଙ୍କୁ ଭଲପାଉଥିବା ବ୍ୟକ୍ତି ଥିଲା କେବଳ ଜଣେ, ଆଗୋ ନାରୀ ।'



୭ ॥

ଅରୁଣାଭ ବ୍ଲାକ୍‌ବୋର୍ଡ଼କୁ ଚାହିଁ ଚମକି ପଡ଼ିଲା । ଲାଲ୍ ଚକ୍‌ରେ ଲେଖାଯାଇଛି ଓଲଟ ତ୍ରିଭୁଜଟିଏ ଏବଂ ଠିକ୍ ତା ତଳେ ଲେଖାଅଛି ଅରୁଣାଭ ଯୁକ୍ତ ଜୟା । ପରେ ପରେ ବନ୍ଧନୀ ସମାନ ଚିହ୍ନ ଓ ତବେ ପରେ ଏକ ପ୍ରଶ୍ନବାଚୀ ।

ଅରୁଣାଭ ଉପରେ କ୍ଷୁବ୍ଧ ଗୁଣ୍ଡାନେତାମାନେ ଅତୀତର ସେହି ଗ୍ଲାନିକର ପରାଜୟକୁ ଭୁଲିପାରିନଥିଲେ । ସେମାନଙ୍କର ସମସ୍ତ କ୍ରୋଧର କେନ୍ଦ୍ରବିନ୍ଦୁ 'ଜୟା' ଉପରେ ପ୍ରତିଶୋଧ ନେବାପାଇଁ ସେମାନେ ସୁଯୋଗ ଖୋଜି ବୁଲୁଥିଲେ । ଅନନ୍ତ ଚଳନ୍ତେ ସେ ସୁବର୍ଣ୍ଣ ସୁଯୋଗ ସେମାନଙ୍କର ହାତମୁଠା ଭିତରକୁ ଆସିଯାଇଥିଲା ।

ଜଗନ୍ନାଥ ମନ୍ଦିରରେ ଜୟା ଓ ଅରୁଣାଭର ଆଳାପ ସେମାନଙ୍କର ସର୍ପଭଳି ନିଷ୍ଠୁର ଅନ୍ତରରେ ପ୍ରତିଶୋଧ କାମନାର ଅଗ୍ନିଜାଳି ଦେଇଥିଲା । ସହରର କାନ୍ଥବାଡ଼ ଜୟା ଓ ଅରୁଣାଭ ସମ୍ପର୍କୀୟ କୁତ୍ସା ବାକ୍ୟଗୁଡ଼ିକରେ ଭରିଯାଇଥିଲା ।

ପୂର୍ଣ୍ଣ ତଲ୍ଲୀନତାର ସହିତ ପଢ଼ାଇବା ସେଦିନ ଅରୁଣାଭ ପକ୍ଷରେ ସମ୍ଭବ ହେଲାନି ।

ଜୟା ସମ୍ପର୍କରେ ଏକପ୍ରକାର ନିସ୍ପୃହତା ସତ୍ତ୍ୱେ ଅରୁଣାଭର ସ୍ୱଭାବଗତ ଥିଲା, ଜୟାର ଅପମାନ ଓ ଭବିଷ୍ୟତ ବିଷୟ ଭାବି ସେ ମ୍ରିୟମାଣ ହୋଇ ପଡ଼ିଥିଲା ।

ଅନ୍ୟମନସ୍କ ଭାବେ କ୍ଲାସ୍ ଛାଡ଼ିଲାବେଳେ ଅରୁଣାଭ ଜାଣି ନଥିଲା ଯେ ପଛବେଞ୍ଚର କେତେକ ପିଲା ତାକୁ ଲକ୍ଷ୍ୟ କରି ମୁରୁକିହସା

ଦେଖୁଛନ୍ତି ଓ ଅନ୍ୟ କେତେକ ସ୍ଥାନରେ ପିଲାଙ୍କ ମଧ୍ୟରେ ତାକୁ କେନ୍ଦ୍ର କରି ଫୁସ୍ ଫୁସ୍ କଥାବାର୍ତ୍ତା ଚାଲିଛି ।

ଷ୍ଟାଫ୍ କମନରୁମ୍‌କୁ ଆସିଲା ପରେ ପିଅନ୍ ଆସି ଖବରଦେଲା ଯେ ତାକୁ ପ୍ରିନ୍‌ସପାଲ୍ ଡ଼ାକୁଛନ୍ତି ।

ପ୍ରିନସ୍‌ପାଲଙ୍କ ରୁମ୍‌ରେ ପ୍ରବେଶ କଲାବେଳେ ସେ ସଚେତନ ହେଲା ଯେ ସଦା ହସ ହସ ମୁଖ ପ୍ରିନସ୍‌ପାଲଙ୍କ ମୁହଁ ସେଦିନ ଅସ୍ୱାଭାବିକ ଭାବରେ ଗମ୍ଭୀର ହୋଇ ଉଠିଛି । 'ବସ ଅରୁଣ, ମୁଁ ଟିକିଏ ଏ କାଗଜପତ୍ର ଗୁଡ଼ିକ ଦେଖିସାରେ । ତାପରେ ଆମେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ କଥାବାର୍ତ୍ତା ହେବା ।'

ଅରୁଣାଭ ନୀରବରେ 'ସେମିନାର୍' ପତ୍ରିକା ପଢ଼ିବାକୁ ଲାଗିଲା । କିଛି ସମୟ ପରେ ପ୍ରିନ୍‌ସପାଲ କହିଲେ 'ଅରୁଣାଭ ! ମୁଁ ଅତ୍ୟନ୍ତ ଦୁଃଖିତ ଯେ ତମର ଶତ୍ରୁଗୋଷ୍ଠୀ ତମ ବିରୁଦ୍ଧରେ ଏକ ଖରାପ ଜନଶ୍ରୁତିକୁ ପ୍ରଚାର କରିବାରେ ସଫଳ ହୋଇଛନ୍ତି ।'

'ଖରାପ ଜନଶ୍ରୁତି ?'

'ତମର ଆଉ ଜୟାର ନାମ ବ୍ୟବହାର କରି ସେମାନେ ସହରର କାନ୍ଥବାଡ଼ର ଶାନ୍ତି ଭଙ୍ଗ କରୁଛନ୍ତି ।'

'ମୁଁ ଜାଣିଛି ସାର୍ ।'

'ତମେ ଟିକିଏ ସାବଧାନ ରହ । ଜୟା ସହିତ କଥାବାର୍ତ୍ତା ବନ୍ଦ କରିଦିଅ ।'

'ମୋର ଅନ୍ତରର ଆବେଦନକୁ ମୁଁ ଅସ୍ୱୀକାର କରି ପାରିବିନି ସାର୍ ।'

'ତମେ କ'ଣ କହିବାକୁ ଚାହଁ ଅରୁଣାଭ ?'

'ମୋ ହୃଦୟରେ ଯେଉଁ ସ୍ନିଗ୍ଧ ଭାବଧାରା ଜୟାପାଇଁ ପ୍ରବାହିତ ହେଉଛି, ତାକୁ ମୁଁ ପ୍ରେମ ଛଡ଼ା ଅନ୍ୟ କୌଣସି ନାମ ଦେଲେ ସତ୍ୟର ଅପଳାପ ହେବ ସାର୍ ।'

‘ଅରୁଣାଭ !’

‘ସତ୍ୟକୁ ସ୍ୱୀକାର କରିବାର ସାହସ ମୁଁ ଏପର୍ଯ୍ୟନ୍ତ ହରାଇନି ।’

‘ତମେ କ’ଣ ସୂଚନା ଦେବାକୁ ଚାହଁ ଯେ ତମେ ଜୟାକୁ ପ୍ରେମ କର ।’

‘ଅବଶ୍ୟ ।’

‘ଆଉ ଜୟା ? ସେ କ’ଣ ତମକୁ ପ୍ରେମ କରେ ?’

‘ମୁଁ ସେ କଥା ଜାଣିପାରିନି ସାର୍ ।’

‘ତମେ ମନେ ରଖିଛ କି ଅରୁଣ । ମୋ ଜାଣିବାରେ ତମେ ଜୟା ସହିତ କେବଳ ଥରେ ଜଗନ୍ନାଥ ମନ୍ଦିରରେ କଥାବାର୍ତ୍ତା ହୋଇଥିଲ ।’

‘ଆପଣ ପାଇଥିବା ସମ୍ବାଦ ସତ୍ୟ ।’

‘ଏକଥା କ’ଣ କେହି ବିଶ୍ୱାସ କରିପାରିବ ଯେ ତମର ଅନ୍ତରରେ ପ୍ରେମ ଜାଗ୍ରତ କରିବାପାଇଁ ସେଇ ଗୋଟିଏ ଥରର ଦେଖାହିଁ ଯଥେଷ୍ଟ ହୋଇଛି ?’

‘ସେକ୍ସପିଅରଙ୍କ ରଚନାର ‘ପ୍ରଥମ ଦେଖାରେ ପ୍ରେମ’ ପଂକ୍ତିଟି ନିଶ୍ଚୟ ଆପଣଙ୍କର ଦୃଷ୍ଟିଗୋଚର ହୋଇଥିବ ।’

‘ତାହେଲେ ମତେ ଏକଥା ବିଶ୍ୱାସ କରିବାକୁ ହେବ ଯେ ସାମନ୍ତ ବ୍ରାହ୍ମଣ ବଂଶଜାତ ଅରୁଣାଭ ମିଶ୍ରଙ୍କର ଶୁଦ୍ରୀ କନ୍ୟା ଜୟା ପ୍ରତି ଅପରିମିତ ଦୁର୍ବଳତା ରହିଛି ।’ ଅଧ୍ୟକ୍ଷଙ୍କ ସ୍ୱର ବିଦ୍ରୂପ ଭରି ଉଠିଲା ।

‘ରାଜ ଆଶ୍ରୟ ମୋର ପୂର୍ବପୁରୁଷଙ୍କୁ ସାମନ୍ତ ପଦବୀଧାରୀ କରାଇଥିଲା । ତେଣୁ ଆଜିର ଏଇ ସାମନ୍ତବାଦ ବିରୋଧୀ ଯୁଗରେ ମୋ ପାଖରେ ଗର୍ବ କରିବାର କୌଣସି ସାମଗ୍ରୀ ନାହିଁ । ତାଛଡ଼ା ଗୀତା ଉକ୍ତ ଗୁଣ କର୍ମକୁ ଯଦି ଜାତିବିଭାଗର ମୂଳ ରୂପେ ଗ୍ରହଣ କରାଯାଏ, ତେବେ ଜୟା ନାଇଡୁ ବ୍ରାହ୍ମଣ ସୁଝୀ ।’

'ତାହେଲେ ତମର ଭବିଷ୍ୟତ ଯୋଜନା କ'ଣ ରହିଛି ?'

'ଜସ୍ନାର ମୋ ପ୍ରତି ଅନୁରାଗ ରହିଛି କି ନାହିଁ ସେ ସମ୍ପର୍କରେ ମୁଁ ଅଜ୍ଞ । ତେଣୁ ମନ ଅନ୍ତଃପୁରରେ ନିଃସନ୍ଦେହ ହେବା ପର୍ଯ୍ୟନ୍ତ ମୁଁ କୌଣସି ଭବିଷ୍ୟତ ଯୋଜନା କଳ୍ପନା କରିପାରୁନ ।'

'ଜସ୍ନା ସହିତ ମୁଁ କଥାବାର୍ତ୍ତା କହିବି ନା ?'

'ଆପଣଙ୍କୁ ଯାହା ଭଲ ଲାଗିବ ତାହା କରନ୍ତୁ ।' ନମ୍ରସ୍ୱରରେ କହିଲେ ଅରୁଣାଭ' ।

ପ୍ରିନ୍‌ସିପାଲ୍‌ଙ୍କ ରୁମରୁ ଫେରିଲାବେଳେ ଅରୁଣାଭ ଚିନ୍ତାମଗ୍ନ ଥିଲା । ପୁରୁଷ-ପ୍ରଧାନ ସମାଜରେ ବିବାହବନ୍ଧନ କେବଳ ପୁରୁଷର ପୌରୁଷ ଝଲସିତ କରୁଥିଲା କିନ୍ତୁ ଏଭଳି ପରିସ୍ଥିତିରେ ସ୍ତ୍ରୀର ସମସ୍ତ ସତ୍ତା ବିପନ୍ନ ହୋଇପଡୁଥିଲା ।

ଜସ୍ନାର ଦୁର୍ନାମ ନେଇ ଆକୁଳିତ ଅରୁଣାଭ ଚମକିପଡ଼ିଲା, ଯେତେବେଳେ ସେ ଦେଖିଲା ଯେ ଜସ୍ନା ହାସ୍ୟଭରାମୁଖରେ ତା ସମ୍ମୁଖରେ ଦଣ୍ଡାୟମାନ ରହିଛି ।

ହାତରେ ଥିବା ଏକ ଗୁଚ୍ଛଫୁଲ ଟେକିଧରିବା ଭଳି ଭଙ୍ଗୀରେ ଜସ୍ନା କହିଲା, 'ଆଜି ଆମଘରକୁ ଆପଣ ଆସିବେ ସାର୍ । ଡି. ଏଚ୍. ଲରେନ୍ସଙ୍କ ଜେରସିଅନ୍ କବିତା ଆପଣଙ୍କ ବିନା ସାହାଯ୍ୟରେ ବୁଝିବା ମୋ ପକ୍ଷରେ ସମ୍ଭବ ହେବନି ।'

'ଜସ୍ନା ବ୍ୟକ୍ତିତ୍ୱର ଏଟା କେଉଁ ଦିଗ ?' ବିସ୍ମୟ ଗ୍ରସ୍ତ ଅରୁଣାଭ ଚିନ୍ତା କରୁଥିଲା ।

ଦୁର୍ନାମର କୌଣସି କାଳିମା ତାର ଚରିତ୍ରଗତ ଅଲୌକିକ ହାସ୍ୟକୁ ସାମାନ୍ୟତମ ଭାବରେ ବି ମଳିନ କରିନଥିଲା । ସବୁଦିନ ଭଳି ସେ ଦିନ ବି ଜସ୍ନା ବେପରୁଆ ଥିଲା ଓ ତାର ଉନ୍ନତ ମସ୍ତକ ନବେ ଡ଼ିଗ୍ରୀ କୋଣ ଅଙ୍କନ କରୁଥିଲା ।

ବମ୍ବୁସ୍ୱାଚନ୍ଦ୍ର ପ୍ରିନ୍ସପାଲଙ୍କ ନିକଟରେ ଜସ୍ମା ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲା ଯେ ସେ ଅରୁଣାଭକୁ ପ୍ରେମ କରେ ।

'ତାହେଲେ ତମେ ଅରୁଣାଭକୁ ବିବାହ କର ଜସ୍ମା ।'

'ବିବାହ ବିଷୟ ମୁଁ ଭାବିନି ସାର୍ ।'

'କାହିଁକି ?'

'ମୁଁ ଯେ ପର୍ଯ୍ୟନ୍ତ ଅରୁଣାଭଙ୍କର ଉପଯୁକ୍ତ ହୋଇପାରିନି, ସେ ପର୍ଯ୍ୟନ୍ତ ମୁଁ ବିବାହ ବିଷୟ ଚିନ୍ତାକରି ପାରିବିନି ।'

'ମୁଁ ତମକୁ ବୁଝିପାରିଲିନି ଜସ୍ମା ।'

'ଏ ସମାଜର ଗତାନୁଗତିକତାରେ ମୁଁ ଯଦି ଏକ ବ୍ୟତିକ୍ରମ ହୁଏ, ତେବେ ଆପଣ କାହିଁକି, ଯେ କେହି ବି ମୋତେ ବୁଝିବାରେ ବାରମ୍ବାର ଚୂକିବ ।'

'କେବଳ ତାଙ୍କୁ ବାଦ୍ ଦେଲେ, ଅନ୍ୟ କୌଣସି ବିଷୟରେ ତମକୁ ଖୁଣିବାକୁ ଅରୁଣାଭର ଅନ୍ତରଙ୍ଗ ବନ୍ଧୁମାନେ ବି ଖାଦ୍ୟ ପାଇବେ ନାହିଁ ।'

'ମୋ ପ୍ରେମର ମୁଁ ଅମର୍ଯ୍ୟାଦା କରିପାରିବିନି ସାର୍ ।'

'ଅରୁଣାଭ ନିଜେ ଯଦି ତମକୁ ବିବାହ କରିବାକୁ ସମ୍ମତ ହୁଏ, ତେବେ ମଧ୍ୟ କ'ଣ ତମେ ତମ ନିଷ୍ପତ୍ତିରେ ଅଟଳ ରହିବ ?'

'ଅରୁଣାଭ ନିଜକୁ ଯେତେ ବୁଝନ୍ତି, ତା ଅପେକ୍ଷା ମୁଁ ତାଙ୍କୁ ବେଶୀ ବୁଝିଛି ସାର୍ । ଅରୁଣାଭଙ୍କ ପ୍ରତିଭାର ପୁଷ୍ପ ଗୃହାଙ୍ଗନରେ ନୁହେ, କେବଳ ମୁକ୍ତାକାଶତଳେ ହିଁ ସୁବାସ ବିଚ୍ଛୁରିତ କରିପାରିବ ।'

'ତମେ କ'ଣ କରିବାକୁ ଚାହଁ, ଜସ୍ମା ?'

'ମୁଁ ତାଙ୍କପାଇଁ ପ୍ରେମର ଦୀପାଳୀ ଜାଳି ବସିଛି ସାରା ଜୀବନ ଧରି ।'

ଗ୍ରିନ୍‌ୱାଲ୍‌ଙ୍କ ମସ୍ତିଷ୍କ କାମ କରୁ ନ ଥିଲା । କୌଣସି ଏକ ନୂତନ ଗ୍ରହର ପ୍ରାଣୀଭଳି ଜର୍ଜ୍‌ ଅସଂବାଧ୍ୟ ଭାଷାରେ କଥାବାର୍ତ୍ତା କରୁଥିଲା ।।

ଗ୍ରିନ୍‌ୱାଲ୍‌ ମନକୁ ସାନ୍ତ୍ୱନା ଦେଇଥିଲେ ଏକଥା କହି ଯେ ଦୁଇ ପୁରୁଷ (Generation) ମଧ୍ୟରେ ଥିବା ଇଂଲଣ୍ଡ ସ୍ନେଲ୍‌କୁ ଅତିକ୍ରମ କରିବାପାଇଁ ଭଲମାନ ପୋତ ଏ ପର୍ଯ୍ୟନ୍ତ ତାଙ୍କର ହସ୍ତଗତ ହୋଇ ପାରି-ନାହିଁ । ତେଣୁ ତାଙ୍କ ପୁତ୍ର-କନ୍ୟା-ପ୍ରଭୃତି ଅରୁଣାଭ ଓ ଜର୍ଜ୍‌ଙ୍କ ଚିନ୍ତାଧାରା ତାଙ୍କ ପକ୍ଷରେ ଅସ୍ପୃଶ୍ୟ ହୋଇ ପଡ଼ିଛି ।

ଗ୍ରିନ୍‌ୱାଲ୍‌ ଜର୍ଜ୍‌ ସହ ଆଲୋଚନା କଲାବେଳେ ଅରୁଣାଭ ଏକାକୀ ଲାଇବ୍ରେରୀ ଷ୍ଟଡ଼ିରୁମ୍‌ରେ ୟେଟସ୍‌ଙ୍କ ଜୀବନୀ ସଂପର୍କରେ ଭାବନା-ମଗ୍ନ ଥିଲେ ।

କେତେ ରାଜ୍ୟର ସମ୍ରାଟ ୟେଟସ୍‌ ସୌନ୍ଦର୍ଯ୍ୟ ଦେଶର ରାଣୀ ମଡ୍‌ଗାନ୍‌ଙ୍କ ଦେଖା ପାଇଥିଲେ ଏକ ଅପୂର୍ବ ବେଳାରେ ।

ଉଭୟେ ଥିଲେ ଆୟର୍ଲଣ୍ଡର ମୁକ୍ତି ସଂଗ୍ରାମର ସହଯୋଦ୍ଧା । ୟେଟସ୍‌ଙ୍କ କଲମ ଓ ମଡଗନ୍‌ଙ୍କ ରୂପ ତଥା କାର୍ଯ୍ୟ ମୁକ୍ତି ସଂଗ୍ରାମକୁ ଇନ୍ଧନ ଯୋଗାଇ ଚାଲିଥିଲା ବର୍ଷ ବର୍ଷ ଧରି ।

ଜନ୍‌ବୁଲ୍‌ର କଠିନ ପଦତଳେ ଛଟ୍‌ଫଟ୍‌ କରୁଥିଲା ଏକ କୋମଳ ଭାବନାସମ୍ପନ୍ନ ଜାତି । ପୃଥିବୀ ସାହିତ୍ୟକୁ ବାରମ୍ବାର ପ୍ରଥମ ଶ୍ରେଣୀର ଲେଖକ ଯୋଗାଇଥିବା ଆୟର୍ଲଣ୍ଡ ତାର ସମସ୍ତ ଶକ୍ତିମତ୍ତା ସତ୍ତ୍ୱେ ଅବରୋଧ କରୁଥିଲା ସାମ୍ରାଜ୍ୟରେ ସୂର୍ଯ୍ୟାସ୍ତ ନ ଦେଖିଥିବା ମଦମତ୍ତ ଇଂଲଣ୍ଡର । ଆୟର୍ଲଣ୍ଡ୍‌ର ଜନ୍ମକ୍ଷମ ମହାମାନବ ପର୍ଯ୍ୟାୟକୁ ଉନ୍ନୀତ କରାଇଦେଇଥିଲା ବହୁ ସାଧାରଣ ଲୋକଙ୍କୁ । ସେମାନଙ୍କୁ ଲକ୍ଷ୍ୟକରି ୟେଟସ୍‌ ଲେଖିଥିଲେ—

Being certain that they and I
But lived where motley is worm.

All changed, changed ulterly :
A terrible beauty is born.

ମୁଁ ଓ ସେମାନେ ସମସ୍ତେ ଥିଲୁ ସାଧାରଣ ସ୍ତରର
ଆଜି ସବୁ ବଦଳିଯାଇଛି, ବଦଳିଯାଇଛି ଅଦ୍ଭୁତ ଭାବରେ
ଜନ୍ମ ନେଇଛି ଏକ ଭୟଙ୍କର ସୌନ୍ଦର୍ଯ୍ୟ ।

ମହ୍‌ଗନ୍ ୟେଟସ୍‌ଙ୍କ ପ୍ରେମିକା । କବି ଦୁଃଖ କରିଥିଲେ ଯେ ଏଭଳି ସୌନ୍ଦର୍ଯ୍ୟ ପାଇଁ ଜଳିବାକୁ ଅଉ ଟ୍ରୟ ଭଳି ସମୃଦ୍ଧିଶାଳୀ ସୌନ୍ଦର୍ଯ୍ୟ ପ୍ରେମୀ ଜଗତ୍ ନାହିଁ ।

ୟେଟସ୍‌ଙ୍କ ବିବାହ ଆମନ୍ତ୍ରଣ ପ୍ରତ୍ୟାଖ୍ୟାନ କରନ୍ତି ମହ୍‌ଗନ । ଗାଲ୍ଲସ୍ ଏଥେନା ଦେବୀଙ୍କ ଭଳି ରାଜକୀୟ ସୌନ୍ଦର୍ଯ୍ୟବତୀ ମହ୍‌ଗନ୍‌ଙ୍କ ରୂପ ବର୍ଣ୍ଣନାରେ ସହସ୍ରମୁଖ ହୋଇଉଠେ ୟେଟସ୍‌ଙ୍କ ଲେଖନୀ । ପ୍ରତ୍ୟାଖ୍ୟାନର ଆଘାତ କବିର ପ୍ରତିଭାକୁ କରେ ଊର୍ଦ୍ଧ୍ୱଗାମୀ । ଜୀବନର ଅପରାହ୍ଣରେ ଏ ତଥ୍ୟ ସ୍ୱୀକାର କରି ୟେଟସ୍ ଲେଖନ୍ତି ମହ୍‌ଗନ୍ ଯଦି ତାଙ୍କ ଆମନ୍ତ୍ରଣ ସ୍ୱୀକାର କରିଥାନ୍ତେ; ସେ ହୁଏତ ଏକ ସମ୍ପନ୍ନ ଗୃହସ୍ଥ ହୋଇପାରିଥାନ୍ତେ; କିନ୍ତୁ ତାଙ୍କ ଭିତରର କବି ଆତ୍ମାର ଶ୍ୱାସରୋଧ ହୋଇଯାଇଥାନ୍ତା ।

ଅରୁଣାଭ ଚିନ୍ତା କରୁଥିଲା ଘଟଣାବଳି ଯେଉଁଭଳି ଦ୍ରୁତଗାମୀ ଏକ୍‌ସପ୍ରେସ୍‌ର ବେଗ ଆହରଣ କରୁଛି, ସେଥିରେ ସେ ଶୀଘ୍ର ଜସ୍ମାକୁ ନିଜର ଧର୍ମପତ୍ନୀର ଆସନ ଦେବାକୁ ଶ୍ରେୟସ୍କର ହେବ । ତା ନହେଲେ ଜସ୍ମା ଭଳି ଏକ ଚମତ୍କାର ବ୍ୟକ୍ତିତ୍ୱକୁ ଆକାଶର ଉଲ୍‌କାଭଳି ଶୂନ୍ୟରେ ମିଳାଇଦେବାକୁ ଦୂଷିତ ମସ୍ତିଷ୍କଧାରୀମାନେ ପ୍ରଚୁର ସମୟ ପାଇଯିବେ ।

ପରିବାର ତରଫରୁ ବିଶେଷ ବାଧା ଆଶା କରୁନଥିଲା ଅରୁଣାଭ, କାରଣ ସ୍ନେହମୟୀ ଜନନୀ ତାର ବାଲ୍ୟ ବୟସରେ ହିଁ ବିଦାୟ ନେଇଥିଲେ ଏବଂ ବାର୍ଦ୍ଧକ୍ୟ ଭାରରେ ଅବନତ ପିତା ସ୍ୱଚାଳିତ ଜ୍ଞାନ ହରାଇ ସାରିଥିଲେ । ଅରୁଣାଭର ସମସ୍ତ ଅନୁରୋଧ ଉପେକ୍ଷା କରି ସେ ପଲ୍ଲୀରେ ହିଁ ଶେଷଜୀବନ କଟାଇବାକୁ ନିଷ୍ପତ୍ତି ନେଇଥିଲେ । ସମ୍ପତ୍ତିର ପ୍ରାଚୁର୍ଯ୍ୟ

ନଥିଲେ ବି ପିତାଙ୍କ ଅବସ୍ଥାରେ ମେଣ୍ଟାଳୋ ତାଙ୍କ ଅଭାବର ଉଦ୍ଭବ ବେଳେ ଅରୁଣାଭ ଅନୁଭବ କରୁନଥିଲା। ଅରୁଣାଭର ଏକମାତ୍ର ଭଗିନୀ ଦୂରଗ୍ରାମରେ ବିବାହ ହୋଇଯାଇବା ପରେ କେବଳ ଉତ୍ସବ ବ୍ୟତୀତ ଅନ୍ୟ ସମୟରେ ଘରକୁ ଆସିବା ତାର ଶ୍ୱଶୁରାଳୟ ଜୀବନରେ ସମ୍ଭବ ହେଉ ନଥିଲା।

ବିବାହ ସମ୍ପର୍କରେ ନିଶ୍ଚିତ ନିଷ୍ପତ୍ତି ନେଇଥିବା ଅରୁଣାଭ ସନ୍ଧ୍ୟା-ବେଳେ ଜସ୍ମାର ଘରକୁ ନିଶ୍ଚିନ୍ତ ମନରେ ଯାଉଥିଲା। ଅପରାହ୍ନର ନମ୍ର ଆଲୋକର ଦଂଶନକୁ ଭୁଲିଯାଇ ନେଇ ସେ ଏକ ନୂତନ ଜୀବନର କେତେକୀ ଅନ୍ୱେଷଣ କରିବାକୁ ଉନ୍ମୁଖ ହେଲାବେଳେ ତାର ମନ ଓ ପ୍ରାଣ ଏକ ଅନିର୍ବଚନୀୟ ମାଧୁର୍ଯ୍ୟରେ ପ୍ଲାବିତ ହୋଇଯାଉଥିଲା। ଜଣେ ଜୟସ୍ୱୀ ଆବିଷ୍କାରକ ଭଳି ଏକ ନୂତନ ରାଜ୍ୟର ପଥିକ ହେବାର ଆଶାରେ ଅରୁଣାଭର ସଦାଚଞ୍ଚଳ ଚିତ୍ତ ଆହୁରି ଦୃଢ଼ତର ହୋଇଉଠୁଥିଲା। ଅନ୍ୟମନସ୍କତା ଫଳରେ କେତେକ ପ୍ରସଙ୍ଗର ଯଥାଯଥ ଦୃଷ୍ଟି ସମ୍ପର୍କରେ ସଚେତନତା ତା ପକ୍ଷରେ ସମ୍ଭବ ହୋଇନଥିଲା।

ଅପେକ୍ଷାରତ ପୂଜାରିଣୀ ଭଳି ଜସ୍ମାର ଭବ୍ୟ ସ୍ୱାଗତ ତାକୁ ଆହ୍ଲାଦିତ କରିଥିଲା। ରାମ ପରିତ୍ୟକ୍ତ ଜାନକୀଙ୍କ ଭଳି ପ୍ରଶାନ୍ତ ମହିମାରେ ଆବୃତ ଜସ୍ମାର ଜନନୀଙ୍କୁ ପ୍ରଣାମ କଲାବେଳେ ଅରୁଣାଭର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଯାଇଥିଲା।

ସ୍ୱଚ୍ଛ ଶୁଭ୍ରାଙ୍ଗନ, ଗୋମୟ ଲେପିତ କାରୁକାର୍ଯ୍ୟ ପୂର୍ଣ୍ଣ ଅଳିନ୍ଦ; ତରୁଲତା ବେଷ୍ଟିତ ଗୃହପଟ; ସବୁ କିଛି ଅରୁଣାଭକୁ ଲୋଭନୀୟ ମନେ ହେଉଥିଲା। ତାର ସୁଦୂର ପଲ୍ଲୀକୁଟୀରର ତୁଚ୍ଛ ଅତିକ୍ରମ କରି ଏକ ସ୍ନିଗ୍ଧ ଉତ୍ତେଜନା ଓ ଆବେଗ ତାର ଶରୀରର କୋଣ ଅନୁକୋଣରେ ବ୍ୟାପି ଯାଇଥିଲା।

ଜସ୍ମାର ପଠନ ଗୃହଟି ଥିଲା ଅତ୍ୟନ୍ତ ସୁନ୍ଦର। ରୁଚିପୂର୍ଣ୍ଣ ପରି-ପାଟିରେ ସଜ୍ଜିତ ପୁସ୍ତକ ଗୁଡ଼ିକ ସମ୍ବର୍ଦ୍ଧନାପୂର୍ବକ ଆମନ୍ତ୍ରଣର ଭଙ୍ଗୀରେ ଅରୁଣାଭକୁ ସ୍ୱାଗତ କରୁଥିଲେ।

'ତମେ ମତେ ତେଲୁଗୁ ଶିଖାଇବ ଜୟା ?' ପ୍ରଶ୍ନାତ୍ମକ ଭଙ୍ଗୀରେ ବାକ୍ୟଟି ଉଚ୍ଚାରଣ କରିଥିଲା ଅରୁଣାଭ ।

'ଆପଣଙ୍କୁ ତେଲୁଗୁ ନ ଶିଖାଇଲେ ଗୁରଜାଡ଼ଙ୍କର କବିତା ଆଲୋଚନା କରିବା ପାଇଁ ସାଥୀ ମୁଁ ପାଇବି କେଉଁଠୁ ?' ଏକ ସିଧାସଳଖ ପଦ ଉତ୍ତର ଦେଇଥିଲା ଜୟା ।

ଅରୁଣାଭ ଅଭିଭୂତ ଥିଲା । ଭାଷାର ନିର୍ମଳତା ମଧ୍ୟରୁ ଏକ ସୁ-ସଂସ୍କୃତ ପରିବାରଟିର ମର୍ଯ୍ୟାଦାପୂର୍ଣ୍ଣ ରୂପ ତା ଚକ୍ଷୁ ଆଗରେ ପ୍ରକାଶ୍ୟ ମନ୍ତ୍ରମାନେ ଉଦ୍ଭାସିତ ଥିଲା ।

'ଆପଣ ମୋତେ ୟେଟସ୍, ଇଲିୟଟ୍, ଆଡେନ୍‌ଙ୍କ କବିତା ଶୁଣାଇବେ, ଆଜି ମୁଁ ଆପଣଙ୍କୁ ଶ୍ରୀଶ୍ରୀ ଶେଷେନ୍ଦ୍ର ଶର୍ମା ଓ ଜ୍ୱାଳାମୁଖୀ ଗୋଷ୍ଠୀର କବିତା ଶୁଣାଇବି ।'

'ଆଜି ରାଉତରାୟ, ରମାକାନ୍ତ ରଥ ଓ ସୀତାକାନ୍ତଙ୍କ କବିତା ?'

'ସେମାନଙ୍କ କବିତା ପରେ ମାନସିଂ ଓ ଗଡ଼ନାୟକଙ୍କ କବିତା ମଧ୍ୟ ଆପଣ ମୋତେ ଶୁଣାଇବେ ।'

'ତମର ରୁଚିରେ କିଛିଟା ରୋମାଣ୍ଟିକ୍ ଭାବାଳୁତା ରହିଛି ।'

ଉତ୍ତରରେ ଜୟା ଆବୃତ୍ତି କରିଥିଲା ରବୀନ୍ଦ୍ରନାଥଙ୍କ କବିତାରୁ ପଦେ—

'ଓରା ଯେ ବଲେ ଆମି ରୋମାଣ୍ଟିକ୍,
ସେ କଥା ମାନିୟେ ନିଇ ।'

'ତମେ ମନ୍ତ୍ରମୁଗ୍ଧ କରିଦେଲ ଜୟା । ରବୀନ୍ଦ୍ରଙ୍କ ରଚନାପ୍ରତି ତମର ପରିଚୟ ମୋତେ ବିସ୍ମିତ କରିଛି ।'

ମୁଖ୍ୟଦ୍ୱାର ବିଭୂଷିତ ଫଟୋଟିଏ ଅରୁଣାଭର ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରଭାବଶାଳୀ ବ୍ୟକ୍ତିତ୍ୱକୁ ଜୀର୍ଣ୍ଣକ ଫଟୋ ମଧ୍ୟ ଘୋଡ଼ାଇବାରେ ଅସମର୍ଥ ଥିଲା । ଗାନ୍ଧୀ ଆଦର୍ଶରେ ଅନୁପ୍ରାଣିତ ସ୍ୱଳ୍ପ ପରିଧାନ ବିଶିଷ୍ଟ

ବ୍ୟକ୍ତି ଜଣକର ସମ୍ପ୍ରଦାୟ ଚେତନାରେ ଯେଉଁ ସାରଲ୍ୟ ଓ ସ୍ୱଚ୍ଛତା ଥିଲା; ତାହା ଅରୁଣାଭର ଜ୍ଞାନ ପଞ୍ଜରର ମଧ୍ୟକୁ ଚାଲି ଆସିଥିଲା ।

'ବାପା ଥିଲେ ଜଣେ ଯୋଗଜନ୍ମା' ହାତ ଦୁଇଟି ଯୋଡ଼ି ଜସ୍ମା ଆବେଗପୂର୍ଣ୍ଣ କଣ୍ଠରେ ମନ୍ତବ୍ୟ ଦେଇଥିଲା ।

'ଯୋଗଜନ୍ମା ହୋଇନଥିଲେ ଏଭଳି କନ୍ୟାରତ୍ନକୁ ପୃଥିବୀପୃଷ୍ଠକୁ ଆଣିବାର ସୌଭାଗ୍ୟ ତାଙ୍କର ହୋଇଥାନ୍ତା କେମିତି ?' ଅରୁଣାଭ ପରିହାସ କରିଥିଲା ।

'ବ୍ରିଟିଶ ଶାସନକୁ ସେ ବିରୋଧ କଲେ ସିନା, ବ୍ରିଟିଶ ଶାସନ ବିଦାୟ ନେବାର ଦୃଶ୍ୟ ସେ ଦେଖିପାରିଲେନି ।'

'ପୂର୍ବରୁ ସେ ବିଦାୟ ନେଇ ନଥିଲେ ବର୍ତ୍ତମାନର କଳଙ୍କିତ ଶାସନ ତାଂକର ବିଦାୟକୁ ଭିରନ୍ଧିତ କରିବାର ସୁନ୍ଦର ବ୍ୟବସ୍ଥା କରିଦେଇଥାନ୍ତା ।'

'ସେମାନେ ସବୁ କେତେ ଶୀଘ୍ର ବଦଳି ଗଲେ । ଗାନ୍ଧିଯୁଗରେ ତ୍ୟାଗ ଓ ସେବା ଯେଉଁମାନଙ୍କର ଆଦର୍ଶ ଥିଲା, ବର୍ତ୍ତମାନ ଯୁଗରେ ...'

'ଭୋଗ ଓ ସ୍ୱାର୍ଥପରତା ସେଇମାନଙ୍କର ପ୍ରଧାନ ଧ୍ୟେୟ ହୋଇ-ପଡ଼ିଛି ।' ଦୁଇଟି ପ୍ଲେଟ୍ ଧରି ଘରଭିତରକୁ ପଶିଆସିଲେ ଜସ୍ମାର ମା ।

ଗୋଟିଏ ପ୍ଲେଟ୍‌ରେ ଥିଲା ଦୋଷା ଓ ଆର ପ୍ଲେଟ୍‌ରେ ଥିଲା ତରକାରୀ । ଜସ୍ମା ଦଉଡ଼ିଯାଇ ଗୋଟିଏ ଗ୍ଲାସ୍ ଜଳ, ଗୋଟିଏ ପ୍ଲେଟ୍‌ରେ ମିଠା ଓ ଆଉ ଗୋଟିଏ ପ୍ଲେଟ୍‌ରେ ଚଟଣି ଧରି ରୁମ୍ ଭିତରେ ପ୍ରବେଶ କଲା ।

'ଏ ତ ରାଜକୀୟ ବ୍ୟବସ୍ଥା !' ଅରୁଣାଭ ମନ୍ତବ୍ୟ ଦେଲା ।'

'ଏ ହେଉଛି ଦକ୍ଷିଣ ଭାରତର ଖାଦ୍ୟ ।'

'ମହାମାନ୍ୟ ଅତିଥିଙ୍କ ପାଇଁ ଉପଯୁକ୍ତ ବ୍ୟବସ୍ଥା କରିବା ଆମର ସାଧ୍ୟର ବାହାରେ,' ଜସ୍ମା ହସି ହସି ଉତ୍ତର ଦେଲା ।

'ଅତିଥିଙ୍କୁ ମହାମାନ୍ୟ ସ୍ତରକୁ କେବେ କାହିଁକି ପ୍ରମୋସନ୍ ଦିଆଗଲା, ଏହା ଅତିଥିଙ୍କର ଗୋଚର ବାହାରେ ।'

'ଆଚାର୍ଯ୍ୟ ଦେବୋ ଭବ', ଏ ଉପନିଷଦ ବାକ୍ୟ ନିଶ୍ଚୟ ଅତିଥି ଶୁଣିଥିବେ ।'

ଯୁକ୍ତିରେ ଜୟାକୁ ପରାସ୍ତ କରିବା ସହଜ ନଥିଲା । ଅରୁଣାଭ ଆନନ୍ଦରେ ସୁରୁଚିପୂର୍ଣ୍ଣ ଓ ସୁସ୍ୱାଦୁଯୁକ୍ତ ଖାଦ୍ୟ ସାମଗ୍ରୀ ଗଳାଧଃକରଣ କରି ହାତ ଧୋଇବାକୁ ଉଠିଗଲା । ଅଗଣାରେ ବହୁ ଫୁଲଗଛର ସୁରଭି ଓ ରୂପ ଅରୁଣାଭର ଘ୍ରାଣେନ୍ଦ୍ରିୟ ଓ ଦର୍ଶନେନ୍ଦ୍ରିୟକୁ ତୃପ୍ତି ଯୋଗାଉ ଥିଲେ । ଜୟା ଗୋଟିଏ ଲମ୍ବା ଧରଣର ମଲ୍ଲୀଫୁଲ ଛିଣ୍ଡାଇ ଅରୁଣାଭ ହାତରେ ଦେଲା । ଅରୁଣାଭ ଫୁଲର ସୁବାସରେ ପ୍ରଭାବିତ ହୋଇ ପଚାରିଲା 'ଏ କ'ଣ ଏକ ସ୍ୱତନ୍ତ୍ର ଧରଣର ମଲ୍ଲୀ ?'

'ଏହାର ନାମ କର୍ପୂର ମଲ୍ଲୀ । ଏ ଫୁଲର ସୁବାସ ଅନେକ ଦିନ ଯାଏ ରହେ ।'

କ୍ଷୁଦ୍ର ପୁଷ୍ପୋଦ୍ୟାନଟି ଅରୁଣାଭକୁ ଅବର୍ଣ୍ଣନୀୟ ଆନନ୍ଦ ଦେଲା । ଅରୁଣାଭ ଥିଲା ଚିରଦିନ କୁସୁମପ୍ରେମୀ ।

ପଠନଗୃହରେ ଜୟାର ସମ୍ମୁଖରେ ବସିଲାବେଳେ ଅରୁଣାଭ ମନରେ ଭାବନା ଜାତହେଲା ଯେ ସେ ବିବାହ ପ୍ରସ୍ତାବ ଦେଇ ଜୟାକୁ ଅନୁଗୃହୀତ କରୁନି, ବରଂ ପ୍ରତିଭାଶାଳିନୀ ଝିଅଟି ତାକୁ ଗ୍ରହଣ କଲେ ସେ ଉପକୃତ ହେବ । କେମିତି କେଉଁ ପ୍ରସଙ୍ଗରେ ସେ ତାର ପ୍ରସ୍ତାବ ଜୟା ସମ୍ମୁଖରେ ଉପସ୍ଥାପିତ କରିବ ଏହା ଭାବି ସେ ଉଦ୍‌ବିଗ୍ନ ଥିଲା । ଜୟା କିନ୍ତୁ ତାର ସମସ୍ୟାର ସମାଧାନ ଦିଗରେ ପ୍ରଥମ ପଦକ୍ଷେପ ନେଇଥିଲା ।

'କାନ୍ଥବାଡ଼ର ଲେଖା ବିଷୟ ନେଇ ଆପଣ ଭାରି ଚିନ୍ତିତ ନା ?' ଜୟା ପ୍ରଶ୍ନ କରିଥିଲା ।

'ମୋର ସମସ୍ତ ଚିନ୍ତା କେବଳ ତମକୁ ନେଇ । ଏ ସମାଜରେ ଆଇନ୍ ସବୁ ପୁରୁଷ ଗଢ଼ା । ତେଣୁ ଏଭଳି କୌଣସି ପରିସ୍ଥିତିରେ ସ୍ତ୍ରୀର

ସେମାନଙ୍କ କ୍ଷତ ହୁଏ, ପ୍ରତ୍ୟୁଷର ତା ତୁଳନାରେ କ୍ଷତିର ପରିମାଣ ଅତ୍ୟନ୍ତ ସାମାନ୍ୟ ।'

'ଏ ଲେଖାଦ୍ୱାରା ମୋର କୌଣସି କ୍ଷତି ହୋଇଛି ବୋଲି ମୁଁ ମନେ କରୁନା ।'

'ଜସ୍ମା !' ହଠାତ୍ ଅରୁଣାଭ ପାଟିରୁ ହଠାତ୍ ବାହାରିଗଲା ।

'ଭଲ ପାଇବାର ଗୋପନ ମନକୁ ନେଇ ଯେଉଁ ସବୁ ପ୍ରଦର୍ଶନୀ ବସାଏ, ତା ହେଲେ ଅପରାଧୀ କସ୍ତୁରୀ କୃତ୍ରିମ ଶ୍ରେଣୀର । କିନ୍ତୁ ସେଥିପାଇଁ ମୁଁ ଅନ୍ତରକୁ ବଦଳାଇ ଦେଇ ପାରିବି କି ?

'ତମର ଆଜିର ଏ ନିମନ୍ତ୍ରଣ ଆଜି କଲୁ ପ୍ରାଚୀର ଲେଖାକୁ ସମସ୍ତ ଗର୍ଭରେ ସ୍ଥାପିତ କରି ସାରିଲାଣି ।'

'ସେ ଧାରଣା ବହୁଦିନରୁ ମୋ ମନରେ ଆସନ ଜମାଇ ସାରିଛି ।'

'ତମେ ମୋ ପକ୍ଷରେ ଅବୋଧ୍ୟ ରହିଗଲ ଜସ୍ମା । ଜାଣିଶୁଣି ଏତେ ବଦନାମ୍ ସୃଷ୍ଟି କରିବାକୁ ତମେ ସୁଯୋଗ ଦେଉଛ କାହିଁକି ?'

ଜସ୍ମା ନୀରବ ଥିଲା । ଅରୁଣାଭ ଆବେଗପୂର୍ଣ୍ଣ କଣ୍ଠରେ ଜସ୍ମାର ହାତଧରି କହିଲା, 'ବୁଝିଜସ୍ମା, ମୁଁ ସବୁ ତୁମକୁ ଜାଣିବାର ଅବସର ଯାଚେ, ତମେ କ'ଣ ମୋର ଅନୁରୋଧକୁ ଗ୍ରହଣ କରି ମୋତେ ଭାଗ୍ୟଶାଳୀ କରିବନି ?' ଦୁଇବାହୁରେ ଅରୁଣାଭକୁ ଆଲିଙ୍ଗିତ ଓ ରୋମାଞ୍ଚିତ କରି ଜସ୍ମା ଅଶ୍ରୁଳ କଣ୍ଠରେ କହିଥିଲା, 'ଏ ଅନୁରୋଧ ମୋର ଜୀବନକୁ ସାର୍ଥକତା ଦେଇଛି । କିନ୍ତୁ ମୋର ପ୍ରେମର ସ୍ଥାୟିତ୍ୱକୁ କ୍ଷୁର୍ଣ୍ଣ କଲାଭଳି କୌଣସି ପଦକ୍ଷେପ ମୁଁ ନେଇ ପାରିବିନି ।'

'ପ୍ରେମର ପୂର୍ଣ୍ଣତା କ'ଣ ମିଳନରେ ଆସେନା ?'

'ମିଳନରେ ଆସେ ଚରମ ତୃପ୍ତି । ଏ ଚରମ ବିନ୍ଦୁପରେ ଆଉ ଆବେଦନର ସମ୍ଭାବନା ନଥିବାରୁ ତାପରେ ଆରମ୍ଭ ହୋଇଯାଏ ଅବବୋଧନ ଓ ତୃପ୍ତିରେ ଆସେ ଅବସାଦ ।'

ଅରୁଣାଭ ଚକିତ ହେଲ । ଜୟାର କଥାବାର୍ତ୍ତାରେ ଯେଉଁ ପ୍ରଗଳଭତାର ଝଲକ ଥିଲ, ତାକୁ ଅସ୍ୱୀକାର କରିବା ତାପକ୍ଷରେ ସମ୍ଭବ ନଥିଲ ।

'ତମେ ମୋର ପ୍ରେମକୁ କ'ଣ ଅସ୍ୱୀକାରର କଣ୍ଟକ ମୁକୁଟ ପିନ୍ଧାଇବ ଜୟା ?'

'କଣ୍ଟକମୁକୁଟ ପିନ୍ଧା ପ୍ରେମ ହିଁ ଈଶ୍ୱରଙ୍କ ପୁତ୍ର ଭଳି ଅମରତ୍ୱର ଦାବୀ କରିପାରେ ।'

ଇଂରାଜୀ ସାହିତ୍ୟର ଅଧ୍ୟାପକ ଅରୁଣାଭ ସେକ୍ସପିଅର୍‌ଙ୍କର ସନେଟ୍‌ରୁ ଆବୃତ୍ତି କରିଥିଲ ।

'ମୁଁ ଯଦି ତମ ସୌନ୍ଦର୍ଯ୍ୟର ବର୍ଣ୍ଣନା କରି କବିତା ଲେଖେ, ତେବେ ଆଗାମୀ ଯୁଗର ପାଠକମାନେ ତାକୁ ଅତିଶୟୋକ୍ତି ଭାବିବେ; କିନ୍ତୁ ତମେ ଯଦି ସନ୍ତାନବତୀ ହୁଅ, ତେବେ ତମ ରୂପଲାଭ କରିଥିବା ସନ୍ତାନକୁ ଦେଖି କେହି ମୋ କଥାକୁ ଅବିଶ୍ୱାସ କରିବେ ନାହିଁ ।'

ଜୟା ଧୀର ଭାବରେ କହିଲ –

'ପ୍ରେମ ଏକ ପ୍ରବାହ, ଏକ ପରିଣତି ନୁହେ ।'

'ମିଳନର ମାଧୁର୍ଯ୍ୟ କଣ ପ୍ରେମକୁ ମହିମାନ୍ୱିତ କରେନା ?'

'ଭାରତର ସର୍ବଶ୍ରେଷ୍ଠ ପ୍ରେମିକା ରାଧା ଓ କୃଷ୍ଣ । ଉଭୟଙ୍କ ଜୀବନରେ ପ୍ରେମ ଶାଶ୍ୱତ, କାରଣ ରାଧା ଶ୍ରୀକୃଷ୍ଣଙ୍କ ଗୃହିଣୀ କିମ୍ବା ନନ୍ଦ-ନନ୍ଦନଙ୍କ ସନ୍ତାନର ଜନନୀ ହୋଇ ନାହାନ୍ତି । ମୋର ଆଦର୍ଶ ରୁକ୍ମିଣୀ ନୁହନ୍ତି, ମୋର ଆଦର୍ଶ ବୃଷଭାନୁ ତନୟା ରାଇ ବିନୋଦିନୀ ।'

ଅରୁଣାଭ ଚକ୍ଷୁରେ ଅଶ୍ରୁ ଦେଖାଦେଇଥିଲ । ଅତି ଆଦରରେ ଅରୁଣାଭର ଅଶ୍ରୁକୁ ଚୁମ୍ବନ କରି ଜୟା କହିଥିଲ, 'ବିବାହ ଓ ସଂସାର ଜଞ୍ଜାଳର ଝଞ୍ଜାରେ ଆମ ପ୍ରେମର ପୁଷ୍ପଟି ଝାଉଁଳିଯାଉ; ମୁଁ ଏହା ଚାହେଁନା । ଆପଣ ଘର ସଂସାର କରନ୍ତୁ । ମୁଁ ପ୍ରେମର ପୂଜାରୀ ହୋଇ ସାରା ଜୀବନ କଟାଇ ଦେବି ।'

'ମୁଁ ଯଉ ଘରଣୀର ସମ୍ମାନ କାହାକୁ ଦିଏ, ତେବେ ତାହା କେବଳ ମାଳବ ତମେ । ତମେ ଯଉ ବିବାହକୁ ଅସ୍ୱୀକାର କରୁଚ, ସାରଜୀବନ ଚମଡ଼ ମୂର୍ତ୍ତିକୁ ସମ୍ମାନ ଦେବା ଛଡ଼ା ମୋ ସମ୍ମୁଖରେ ପଥ ନାହିଁ ।'

'ପରିବର୍ତ୍ତନଶୀଳ ଦୁନିଆରେ ସବୁ କିଛି ବଦଳିଯାଏ ।'

'ଏକଥା କେବଳ ମୋ ପ୍ରତି ନୁହେଁ, ତମ ପ୍ରତି ମଧ୍ୟ ପ୍ରଯୁଜ୍ୟ ।'

ସେ ସନ୍ଧ୍ୟାଟି ଅରୁଣାଭ ଜୀବନର ଶ୍ରେଷ୍ଠ ସନ୍ଧ୍ୟା ଥିଲା । ତା ହୃଦୟର ପ୍ରେମର ଫୁଲ ସେଦିନ ପୂର୍ଣ୍ଣ ପ୍ରସ୍ଫୁଟିତ ହୋଇ ସାରିଥିଲା । ଫେରିଲାବେଳେ ସେ ଗୁଣୁ ଗୁଣୁ ଆବୃତ୍ତି କରୁଥିଲା—

'ତୋମାର ରେଖେ ଦେଖେଛି ଆମି<br>
ଆମାର ସବନାଶ ।'



।

ବସ୍ତୁଗଡ଼ର ପ୍ରଧାନମାର୍ଗରେ ଧୂଳି ଧୂସରିତ ଶ୍ରମିକର ପଦଯାତ୍ରା ।

ଛୁଟିଛି ସ୍ଲୋଗାନ୍ ଆକାଶ ଚିରି, 'ଆମର ଦାବୀ ପୂରଣ କର ।'

ଚାଲିଛନ୍ତି ବୃଦ୍ଧ, ବୃଦ୍ଧା, ତରୁଣ, ତରୁଣୀ ।

ଷୋହଳ, ଅଠର କିଲୋମିଟର୍ ପାଦରେ ଚାଲି ଚାଲି ଆସିଛନ୍ତି ସେମାନେ ।

ଦେହ ଘର୍ମାକ୍ତ । ମୁଖମଣ୍ଡଳରେ କ୍ଳାନ୍ତିର ସ୍ପଷ୍ଟ ସ୍ୱାକ୍ଷର ।

ସେମାନେ ଚାଲିଛନ୍ତି ବସ୍ତୁଗଡ଼ ବସ୍ ଷ୍ଟାଣ୍ଡ୍‌କୁ ।

ସର୍ବଂସହା ବସୁଗଡ଼ ବସ୍ ଷ୍ଟାଣ୍ଡ୍ ।

ତାରି ଉଦାର ବୁକୁ ଉପରେ ଉନ୍ମତ୍ତ ଓ ଉଦ୍ଧତ ନେତାମାନେ ନାଚି ଆସିଛନ୍ତି ଯୁଗ ଯୁଗ ଧରି ।

ଶୋଷଣର ଅସଂଖ୍ୟ ଜୀବାଣୁ ସେମାନେ ବିଞ୍ଚି ଦେଇଛନ୍ତି ବସୁଗଡ଼ର ପବନରେ ।

ଧନ, ଜନ, ଗୋପଲକ୍ଷ୍ମୀର ଆଲିଙ୍ଗନ ଭିତରେ ସେମାନେ ଦେଖିଛନ୍ତି ଆହୁରି ଉପରକୁ ଚଢ଼ିଯିବାର ସ୍ୱପ୍ନ । ମଣିଷର ଦୁଃଖ ଓ ଲୁହକୁ ନେଇ ସେମାନେ କରିଛନ୍ତି ବ୍ୟବସାୟ ।

ସେମାନଙ୍କ ଦୋକାନ ଆଗରେ ଥିବା ସାଇନ୍‌ବୋର୍ଡ୍ ସେମାନେ ବହୁଥର ବଦଳାଇ ଦେଇଛନ୍ତି ପରିସ୍ଥିତି ଅନୁଧ୍ୟାନ କରି ।'

ସେମାନେ କଂଗ୍ରେସ, ଜନତା, ଲୋକଦଳ, ଭାରତୀୟ ଜନତା ।

ଅସ୍ଥାୟୀ ଶ୍ରମିକର ବଡ଼ ବଡ଼ ପେଜୁଆ ଆଖିରେ ଆଲୋକର ପ୍ରଥମ ଉଜ୍ଜ୍ୱଳରେଖା ଝଲସି ଉଠିଲା । ତାରି ସେଇ ବିଶ୍ୱାସ ତଳେ ତଳେ

ଚନ୍ଦ୍ରଗୁଡ଼ିକୁ ନେଇ କେନ୍ଦ୍ରୀକ କଲ ଷ୍ଟାମ୍ପ୍ ଉପରେ ଘରଠାଣିରେ ଉପବେଶନ କରିଥିବା ସବୁଦଳର ନେତାମାନଙ୍କ ଉପରେ । ସେମାନେ ଛେମୁଣ୍ଡି ଚୋକି ଶ୍ରମିକଙ୍କୁ ଆହ୍ୱାନ ଦେଉଥିଲେ ଧର୍ମଘଟକୁ ଆହୁରି ଉଗ୍ରତର କରିବା-ଲାଗି । ସେମାନେ ଭାବୁଥିଲେ ଉପସ୍ଥିତ ପରିସ୍ଥିତିରେ କେବଳ ଶ୍ରମିକଙ୍କୁ ଉତ୍ତେଜିତ କରିବା ଛଡ଼ା ସେମାନଙ୍କର ଅନ୍ୟ କୌଣସି ଦାୟିତ୍ୱ ନାହିଁ । ଉପାଧି ଶ୍ରମିକଙ୍କ ସାମନାରେ ସେମାନଙ୍କର ଚର୍ଯ୍ୟ, ବୈଷୟ, କୌଶଳ୍ୟ, ନେପଥ୍ୟ ମାଲିକ ବିପ୍ଲବୀଙ୍କ ବିନ୍ଦୁ ସମସ୍ତ ଧନ ହରିବାକୁ ଲାଗିଲା ଉତ୍ତେଜନାରେ ଆବେଗରେ ।

ତାପରେ ସେମାନେ ଭୁଲିଗଲେ ଏହି ଦରିଦ୍ରଶ୍ରମିକ ପରିବାରର ଜୀବନ ମରଣ ସମସ୍ୟା ସେମାନଙ୍କର କାର୍ଯ୍ୟକଳାପ ଉପରେ ନିର୍ଭର କରୁଛି । ଅନ୍ନଦାଭଙ୍କ ମନରେ ବିତୃଷ୍ଣା ଓ ବିଷାଦ ଭରିଯାଇଥିଲା ।

ମାଲିକ୍ ପାଖରେ ଠିଆ ହେଲାବେଳେ ଅନ୍ନଦାଭ ଆଖିରେ ଜଳୁଥିଲା ନିଆଁ ।

'କଥା କହି ଲୋକଙ୍କୁ ଭୁଲାଇବାରେ ଯେଉଁମାନେ ଓସ୍ତାଦ୍, ସେମାନଙ୍କ ପଦତଳରେ ଆଜି ଭାରତ ଦେଶ ଟଳମଳ ।

ଶ୍ରମିକ-ଶ୍ରେଣୀ ସପକ୍ଷରେ ସ୍ଲୋଗାନ୍ ଦେଉଥିବା ଏଇ ରାଜନୀତିଜ୍ଞ-ମାନଙ୍କର କଥାରେ ଯଦି ଶତକଡ଼ା ଦଶ ସତ୍ୟତା ଥାଆନ୍ତା, ତେବେ ଭାରତର ସମସ୍ତ କ୍ୟାପିଟାଲିଷ୍ଟ ବଙ୍ଗୋପସାଗର କିମ୍ବା ଆରବ ସାଗରରେ ଏତେବେଳକୁ ବୁଡ଼ି ସାରନ୍ତେଣି ।

ଏମାନେ ଯେତେବେଳେ ଶ୍ରମିକନେତା ସାଜି ଆନ୍ଦୋଳନକୁ ତୀବ୍ରତର କରିବାକୁ ଡାକରା ଦିଅନ୍ତି, ଭିତର ଦ୍ୱାରରେ ଦାମିକା ପାନଶାଳାରେ ଶିଳ୍ପପତିଙ୍କ ଅର୍ଥ ଏମାନଙ୍କ ଗଭୀର ପକେଟ୍‌କୁ ଲମ୍ଫଡ଼ିଆଁ ମାରିଲା ପରେ ଏମାନେ ନାମ ଲେଖାନ୍ତି ଶିଳ୍ପମାଲିକଙ୍କର ବଦାନ୍ୟତାରେ ।

ଫଳରେ ଶ୍ରମିକଙ୍କୁ ଅଭୁକ୍ତ ରଖିଯାଇ ଆନ୍ଦୋଳନ ପର୍ବର ପରିସମାପ୍ତି ଘଟେ ।

ଥେରୁବାଲ କାରଖାନାର ଅଫିସରର ବିରୁଦ୍ଧରେ ଦୁଇମାସରୁ ଊର୍ଦ୍ଧ୍ୱ ଆନ୍ଦୋଳନ ଚଳାଇ ଆସିଲେଣି ଶ୍ରମିକ ଗୋଷ୍ଠୀ । ଶିଳ୍ପପତିର

ଉଗ୍ର ହୋଇଉଠିଥିବା କେତେକ ଶ୍ରମିକ ପକ୍ଷରେ ହିଂସ୍ର ଓ ରକ୍ତମୁଖା ପୋଲିସ୍‌ର ଲପ୍ତାଙ୍ଗି ଗୋଇଠିର ପେଷଣ ଅନିବାର୍ଯ୍ୟ ହୋଇଉଠିଲା ।

ପରଜପୁରର କାଳିମାମୟ ମୁଦ୍ରାଙ୍କ ପୃଷ୍ଠଭୂମିରେ ଲେପି ହୋଇଗଲା ଆନ୍ଦୋଳନର ଶୁଭ୍ର ତନୁଶ୍ରୀରେ । ତା ପରେ ପରେ ଥେଟ୍ରୁହାଲରେ ଅଭିନୀତ ହେଲା ଏକ ଅଭାବନୀୟ ଦୃଶ୍ୟ । ଶିଳ୍ପପତିର ଶିକାର ଆନ୍ଦୋଳନର ପ୍ରଥମଧାଡ଼ିର ଦୁର୍ଭାଗ୍ୟ ବଂଶାଧିକ ଶ୍ରମିକ ପରିବାର ଯେତେବେଳେ ଅଭାବର ତାଡ଼ନାରେ ସନ୍ତ୍ରସ୍ତ ହୋଇ ଲୁହରେ ଧରଣୀକୁ ଅର୍ଦ୍ର କରୁଥିଲେ, ମଧୁଭଣ୍ଡା ଆକର୍ଷିତ କେତେଜଣ ବଶିଷ୍ଟ ସାହିତ୍ୟବ୍ରତୀ ପ୍ରଶଂସାର ତୂଣୀର ରିକ୍ତ କରି ଢାଳିଥିଲେ ଯଶସ୍ୱୀ ଶିଳ୍ପପତିଙ୍କ ପଦତଳେ ।

ଅରୁଣାଭ ପାଇଁ ଏ ଉପସର୍ଗଗୁଡ଼ିକ ଆଣିଥିଲା ମୋହଭଙ୍ଗର ବାର୍ତ୍ତା । ଲକ୍ଷ୍ମୀ ସରସ୍ୱତୀ କଳହ ଯେଉଁ ମହାନ୍ ପ୍ରଶ୍ନର ଇଙ୍ଗିତ ବହନ କରୁଥିଲା ହେତୁ ଧବଳ ପ୍ରଶ୍ନର ପୁଂଜ ପୂଜକ ଭାରତରେ ଖଣ୍ଡ ଖଣ୍ଡ ହୋଇଯାଇ-ଥିଲା ।

ଅରୁଣାଭର ମନରେ ଉଙ୍କି ମାରିଲା ୱେଷ୍ଟଲ୍ୟାଣ୍ଡ୍ କବିତାର କେତୋଟି ପଂକ୍ତି ।

You know only a heap of broken images,
where the dead tree gives no shelter
And the cricket no relief.

ତମେ ଚିହ୍ନ କେବଳ ଭଗ୍ନ ପ୍ରତିମାର,
ଏକ ସ୍ତୁପକୁ ଯେଉଁଠି ମୃତ ବୃକ୍ଷ ଛାୟା ଦେଇପାରେନା କିମ୍ବା
ପତଙ୍ଗଟିଏ ଆଶ୍ୱାସନାର ବାର୍ତ୍ତା ବହନ କରେନା ।

❋

‘ଆପଣ ଜଣେ ଅଧ୍ୟାପକ। ଆପଣ ରାଜନୀତି କରିବା ଉଚିତ ନୁହେଁ ।’

‘ରାଜନୀତି ଆପଣ କାହାକୁ କହୁଚନ୍ତି ? ଗରିବଲୋକଙ୍କର ଶୋଷଣ ବିରୁଦ୍ଧରେ ସ୍ୱର ଉଠାଇବା କ'ଣ ରାଜନୀତି ?’

‘ଆପଣଙ୍କ ଉପରକୁ ବିପଦ ମାଡ଼ି ଆସୁଚି ।’

‘ଆସୁ ସେଥିପାଇଁ ମୁଁ ବିଚଳିତ ନୁହେଁ ।’ ନିକଏ ଭ[illegible] ଅଚୁଣାଭ ପୁଣି କହିଲେ, ‘ସରକାରୀ ଅଫିସର୍ ଏବଂ ପ୍ରାଇଭେଟ୍ କଲେଜର ଅଧ୍ୟାପକଙ୍କ ଆଚରଣ ସଂହିତା ଏକା ନୁହେଁ ।’

‘ଆପଣ ମନ୍ତ୍ରୀ ଦମ୍‌କାଙ୍କୁ ବିରୋଧ କରୁଚନ୍ତି ।’

‘ଯେଉଁଲୋକଟି ଆଶ୍ରମ ସ୍କୁଲ୍‌ର ଏଗାର ହଜାର ପାଞ୍ଚଶହ ଟଙ୍କା ତା'ର ପ୍ରେମାସର ଗପୁଗଡ଼ ଭଉଣୀକୁ ରଙ୍ଗୀନ୍ ଓ ପୁଷ୍ଟିତ କରେ, ଆପଣ ସେହି ମନ୍ତ୍ରୀଙ୍କ କଥା କହୁଛନ୍ତି କି ?’

କଲେଜ ଗଭର୍ଣ୍ଣିଂବଡ଼ିର ସଭାପତି ଏସ୍. ଡ଼ି. ଓ କହିଉଠିଲେ, ‘ଦେଶରେ ଦୁର୍ନୀତି ରହିଚି ଓ ରହିବ । ଆପଣ ଅଯଥା ପଥରକାନ୍ଥ ଉପରେ ମୁଣ୍ଡ ପିଟୁଚନ୍ତି ।’

‘ସୂର୍ଯ୍ୟ ଆଲୋକ ଓ ଚାପ ଟକ୍ଷରଚ ଭଳପରି ଶ୍ରୀ ଦମ୍‌କା ଓ ତାଙ୍କ ସହକର୍ମୀମାନେ ଦୁର୍ନୀତି ଓ ଶୋଷଣ ବଞ୍ଚ ବ୍ଲକଚନ୍ତି ସମାଜର ପ୍ରତି ସ୍ତରରେ । ବିଭିନ୍ନ ଯୋଜନା ବାବଦରେ ଯାହା ଟଙ୍କା ଆସୁଚି ଆଦିବାସୀ ମଙ୍ଗଳ ପାଇଁ, ଶ୍ରୀ ଦମ୍‌କା ଓ ତାଙ୍କର ଲୋକେ ସେଥିରୁ ସିଂହଭାଗ ଅହୁଲ୍ କରି ନେଉଚନ୍ତି ।’

‘ଆପଣଙ୍କର ମୋ ପାଖକୁ ଆସିବାର ଉଦ୍ଦେଶ୍ୟ କ'ଣ ?’

'ଆଦିବାସୀ ଗାଁରେ ଟ୍ୟୁବ୍‌ୱେଲ୍ ନାହିଁ । ସେମାନଙ୍କୁ ପାନୀୟ ଜଳ ଯୋଗାଇ ଦେବାର ବ୍ୟବସ୍ଥା ହେଉ ।'

'ହଁ, ମୁଁ ସେ ଦିଗରେ ବିଚାର କରିବି । ଆଉ ଆପଣଙ୍କୁ ମୁଁ ପୁଣି ଥରେ ସତର୍କ କରି ଦେଉଛି ଯେ ଆପଣଙ୍କ ଉପରକୁ ବିପଦ ମାଡ଼ି ଆସୁଛି ।'

ସ୍ତବ୍ଧ ଅରୁଣାଭ ଉତ୍ତର ଦେଇଥିଲେ, 'ଏସ୍. ଡ଼ି. ଓ ମହାଶୟ, ଆପଣ ଏ ଅଞ୍ଚଳକୁ ନୂଆ ଆସିଛନ୍ତି, କିନ୍ତୁ ମୁଁ ଏ ଅଞ୍ଚଳରେ ଦଶବର୍ଷ ହେଲା ଶୋଷଣ ବିରୁଦ୍ଧରେ ସଂଗ୍ରାମ କରୁଛି ।

ଜନତା ସରକାର ଅମଳରେ ମୁଁ ବିଦ୍ରୋହର ଝଣ୍ଡା ଉଠାଇଥିଲି କାରଣ ସେମାନେ ଦେଶକୁ ଦେଇଥିବା ପ୍ରତିଶ୍ରୁତିକୁ ଟିକୁରି ଟିକୁରି କରି-ଦେଉଥିଲେ ।

ଆଜି ମଧ୍ୟ ସପୁଗଡ଼ର ଶୁଭ୍ରତନୁରେ ଭ୍ରଷ୍ଟାଚାରର ମେଞ୍ଚା ମେଞ୍ଚା କଳା ଢୋଳି ଦେଉଥିବା କ୍ଷମତାସୀନ ମନ୍ତ୍ରୀ ଦମ୍ଭକା ଓ ତାଙ୍କର ସପୁତାମା ପାର୍ଶ୍ୱଚରମାନଙ୍କୁ ମୁଁ ଝଟ୍‌କରି ଦେବାର ସ୍ୱପ୍ନ ଦେଖୁଛି ।'

ଏସ୍. ଡ଼ି. ଓଙ୍କ ମୁହଁରେ ବଲକ୍ତର କାଳିମା ଉକୁଟି ଉଠିଥିଲା ।

'ଆପଣ ଅଫିସର୍‌ମାନଙ୍କୁ କାହିଁକି ବିରୋଧ କରୁଛନ୍ତି ?'

'ଆଃ ! ଅଫିସର୍ ! ମୁଁ ଚିରଦିନ ପ୍ରଶଂସା କରି ଆସିଛି ସଚ୍ଚୋଟ ଓ ଦକ୍ଷ ଅଫିସର୍‌ମାନଙ୍କୁ ।

'ରାଜନୀତିର ବିଷାକ୍ତ ଛାୟାରୁ ସେମାନେ ବର୍ଷ ବର୍ଷ ଧରି ରକ୍ଷା କରି ଆସିଛନ୍ତି ସପୁଗଡ଼ ସହରକୁ ।

ଆଜି ଆଜି ··· ?'

'ରହିଗଲେ କାହିଁକି ? ବାକ୍ୟ ଶେଷ କରନ୍ତୁ ।'

'ଆଜିର ସପୁଗଡ଼ରେ ମନ୍ତ୍ରୀଙ୍କ ପାର୍ଶ୍ୱଚର ଓ ଅଫିସର୍‌ଙ୍କ ମଧ୍ୟରେ ସୀମାରେଖା ଟାଣିବା ଦୁଷ୍କର ହୋଇପଡ଼ିଛି ।'

'ମୁଁ ବର୍ତ୍ତମାନ କାଗଜକଳ ଗିଳ । ପରେ କଥାବାର୍ତ୍ତା ହେବା ।'

ଏସ୍. ଡ଼. ଓଙ୍କ ଗନ୍ ଗୁଳିଗଣ ପ୍ରଚଣ୍ଡ ଧ୍ୱନି ଉଠାଇ । ଉଗ୍ରମାନେ ମନଟେନଇ ଅନ୍ତୁଣାଉ ଗୁଳିବାକୁ ଆରମ୍ଭ କଲେ ସମୁଦ୍ରତଟର ମୁଖ୍ୟ ରାସ୍ତା-ଉପରେ ।

ଏଥର ତାର ତଳପଥକୁ କଣ୍ଟକିତ କରିବାପାଇଁ ବନ୍ଧଠାକର ହୋଇସାରିଲେଣି ଗଣତନ୍ତ୍ରର ଦୁଇଟି ସ୍ତମ୍ଭ 'ମନ୍ତ୍ରୀ ଓ ବ୍ୟୁରୋକ୍ରାଟ୍ ।' ଏ ଦୁଇଟି ସ୍ତମ୍ଭଦେଶର ସ୍ୱାଧୀନତାକୁ ନିମନ୍ତ୍ରଣ କରି ଆଣିଛି ଅମାବାସ୍ୟାର ରାତି ।

ସଫଳନେତା ଓ ଅଫିସର୍ମାନେ ଆମେରିକାର ବିଳାସୀଜୀବନ ସ୍ୱପ୍ନ ଦେଖୁଥିଲେ ବେଳେ ଅନାହାରରେ ମୃତ୍ୟୁ ପଡ଼ୁଛନ୍ତି ଦେଶର ଅଗଣିତ ଶିଶୁ ଓ ନରନାରୀ ।

ସ୍ୱାର୍ଥର ଅନ୍ଧ କୋଠରୀରେ ବନ୍ଦୀ ହୋଇଯାଇଛି ଦେଶକୁ ଗଢ଼ିବାର ସମସ୍ତ ସ୍ୱପ୍ନ ଓ ସାଧନା ।

କର୍ମର ପାଉଁଶିଆ ପ୍ରାଙ୍ଗଣରେ ପଡ଼ି ରହିଛି ଅସଂଖ୍ୟ ଆଦର୍ଶର ବଳନ୍ କଙ୍କାଳ ଖପୁରି ଗୁଡ଼ିଏ ।

ସମସ୍ତ ଶିକ୍ଷିତ ସମ୍ପ୍ରଦାୟ ଉପରେ ସବାର ହୋଇ ବସିଛି ଏକ ବିମୂଢ଼ ଜଡ଼ତା ।

ଦଳିତ ସମାଜ ଉପରେ ଯେତେ ଅତ୍ୟାଚାର ହେଲେ ବି ବୁଦ୍ଧି-ଜୀବୀଙ୍କର କିଛି ଯାଏ ଆସେନା ।

ସ୍ୱାର୍ଥପରତାର ପଙ୍କ ଭିତରେ ଆକଣ୍ଠ ନିମଜ୍ଜିତ ସେମାନେ । ଆଜି ଲେଖକ ଓ କବିମାନେ ?

କ୍ଷମତାର ରଙ୍ଗମଞ୍ଚରେ ପାଦ ପ୍ରସାରକୁ ଉଜ୍ଜ୍ୱଳ ରଖିବା ଦାୟିତ୍ୱ ସେମାନେ ସୁନ୍ଦରରୂପେ ବହନ କରିଚନ୍ତି ।

ପୁରୋହିତର ଛଦ୍ମ ମାନସକୁ ସାହିତ୍ୟରେ ରୂପାୟିତ କରି ତା ମଧ୍ୟରେ ସେମାନେ ଆତ୍ମଶ୍ଳାଘାର ମନ୍ତ୍ର ଜପ କରୁଛନ୍ତି ।

ଦରବାରରେ ଦେହଳୀ ଲଙ୍ଘନ କଲା ବେଳେ ଏମାନଙ୍କର ଦେହ ମନ ଉଚ୍ଛ୍ୱସିତ ପୁଲକରେ ଉଲ୍ଲସିତ ହୁଏ ।

ସ୍ୱାଧୀନୋତ୍ତର ଭାରତରେ ଉଦ୍‌ବାସ୍ତୁ ବାମନ ନେତାମାନଙ୍କର ଏତେ ପ୍ରାଚୁର୍ଯ୍ୟ କାହିଁକି ?

ଏ କ'ଣ ଏକ ନିରସ ଅଳକଷୀ ଯୁଗର ଅଭିଶାପ ନା ପ୍ରାକ୍‌ସ୍ୱାଧୀନ ଭାରତର ଅମାପ ଶକ୍ତିକ୍ଷରଣ ଜନିତ ଅବସାଦକାରୀ କ୍ଲାନ୍ତି ?

ଜନତା ଏତେ ଅସହାୟ ଯେ ସମ୍ବଲପୁରର ରକ୍ଷୁ କାଦକ୍ରୁଥିଲା ଏମ୍. ଡି. ଓ ମାନଙ୍କୁ ନେଇ । ପରିସ୍ଥିତିର ପ୍ରତିକୂଳତା ସତ୍ତ୍ୱେ ଉଲଙ୍ଘ ଚରବାଗିର ଧାରଭଳି ଝଲସି ସମ୍ବଲପୁରର କସନ୍ତର ମନମତାଣିଆ ପବନ ସୃଷ୍ଟି କରୁଥିଲେ କେତେକ ତରୁଣ ଅଫିସର୍ । ଆଜି କେତେ ବର୍ଷର ଭିତରେ ଅକର୍ମତ ଅଫିସର୍ ଗୃହ, ଶାଗୁଣାର ସଂଗୋଷ୍ଠି ଦାଖାଳର ସମ୍ବଲପୁରର ମାଟିରେ ଶୁଣିଚନ୍ତି ବେଦନା ଓ ଯନ୍ତ୍ରଣାର ଗାନ । ଏମାନଙ୍କୁ ବିଳାସ ଉପକରଣ ଯୋଗାଇ ସହରର ଅଶୁଭ ଦୁଷ୍ଟ ଗ୍ରହମାନେ ନିଜ କକ୍ଷକୁ ପ୍ରସାରିତ ଓ ଉଜ୍ଜଳ କରି ପାରିଚନ୍ତି ।

ବହୁଦିନ ପରେ ସମ୍ବଲପୁର ସହରକୁ କଳଙ୍କିତ କରିଥିଲେ ଏକ ଧୂର୍ତ୍ତ ମେରୁଦଣ୍ଡହୀନ ଅଫିସର୍ ଗୋଷ୍ଠୀ । ଅରୁଣାଭକୁ କଣ୍ଟକମୁକ୍ତ ପିନ୍ଧାଇବାକୁ ଚେଷ୍ଟାର ଅନ୍ତ ନଥିଲା ।

ମନ୍ତ୍ରୀ ଦମ୍‌କା ଶୋଷଣର ଏଇ ଆୟୁଧମାନଙ୍କୁ ଚମତ୍କାର ଭାବରେ ବ୍ୟବହାର କରୁଥିଲେ । ସୁରା, ସାକୀ ଏବଂ କାଞ୍ଚନର ସୁଲଭତା ପ୍ରତି ନଜର ଦେଇ ଅଫିସର୍‌ମାନେ ମନ୍ତ୍ରୀଙ୍କର ପ୍ରୀତିସ୍ନିଗ୍ଧ ଦୃଷ୍ଟି ଲାଭକରି ନିଜକୁ କୃତକୃତ୍ୟ ମନେ କରୁଥିଲେ ।

ଅରୁଣାଭର ମନପର୍ଦ୍ଦାରେ ଫୁଟିଉଠିଲା ଅତୀତର ଏକ ଅଭୁଲା ଦିନର ସ୍ମୃତି । ଜଣେ ଭୁଇଁ ଅଫିସର୍‌ଙ୍କ ସହ ସେ ଆଲୋଚନାରେ ବ୍ୟସ୍ତ ଥିଲାବେଳେ ଫୋନ୍ ବାଜି ଉଠିଥିଲା । କିଛି ସମୟ ଫୋନ୍‌ରେ କଥାବାର୍ତ୍ତା କଲାପରେ ଅଫିସର୍‌ଜଣକ ଅରୁଣାଭକୁ କହିଥିଲେ, 'ଜାଣନ୍ତି କିଏ ଫୋନ୍ କରିଥିଲେ ?'

'ନା'

'ମନ୍ତ୍ରୀ ଶ୍ରୀ ଦମ୍ଭକା ମୋତେ ଅନୁରୋଧ ଜଣାଇଲେ ଏକ ହତ୍ୟା ମକଦ୍ଦମାରେ ସମ୍ପୃକ୍ତ ଅପରାଧୀମାନଙ୍କ ପ୍ରତି କୋହଳ ମନୋଭାବ ଦେଖାଇବା ଲାଗି । ୩୦୨ ଦଫା ବଦଳରେ ୩୦୭ ଦଫା ସେମାନଙ୍କ ପ୍ରତି ଲଗୁ କରିବାକୁ ସେ ମୋତେ ବହୁତ ଥର କହିଲେଣି ।'

'ଆପଣ କ'ଣ ଉତ୍ତର ଦେଲେ ?'

'ମୁଁ ସ୍ପଷ୍ଟ ମନା କରିଦେଲି ।'

ନବାଗତ ଅଫିସର୍‌ଗୋଷ୍ଠୀର ବେଶ କଷ୍ଟାର୍ପିତ ଚକ୍ଷୁଗୁଡ଼ିକ କେନ୍ଦ୍ରିତ ହୋଇ ଯାଇଥିଲା ଅରୁଣାଭ ଉପରେ ।

ଝଡ଼ ପୂର୍ବରୁ ପବନରେ ଯେଉଁ ଭଳି ଥମ୍ ଥମ୍ ଲାଗୁଥାଏ, ସେଭଳି ଏକ ଆଶଙ୍କା ପରିପୂର୍ଣ୍ଣ ସାଗର ସୂଚନା ପାଉଥିଲା ଅରୁଣାଭ ।

ଅରୁଣାଭ ନିଜ ମନକୁ ବିଶ୍ଳେଷଣ କରିବାକୁ ଯାଇ ଚମକି ପଡ଼ିଥିଲା । ସଗ୍ରାମୀ ଦୃଢ଼ତା ବଦଳରେ ଅସହାୟତା ତା ମନର ଅଗଣାରେ ବିଚରଣ କରୁଥିବା ସେ ଦେଖିପାରିଥିଲା ।

ଶାର୍ଦ୍ଦୁଳର ଗର୍ଜନ ବଦଳରେ ମେଷର ମେଁ ମେଁ ନିଜ ଅନ୍ତରରେ ଶୁଣିବାକୁ ପାଇ ତାର ମୋହଭଙ୍ଗ ଘଟିଥିଲା ।

ସେ କ'ଣ ସିଂହ ଚମଡ଼ା ମଡ଼ାଇ ଚରୁଥିବା ଏକ ଗର୍ଦ୍ଦଭ ?

ତା ନହେଲେ ବ୍ୟୁରୋକ୍ରାଟ୍ ଓ ମନ୍ତ୍ରୀଙ୍କ ଅପବିତ୍ର ମେଣ୍ଟ ଆଗରେ ସେ ନିଜକୁ ଏତେ ଅସହାୟ ମନେ କରୁଚି କାହିଁକି ?

ଗୃହକର ପ୍ରତି ମଧ୍ୟବର୍ତ୍ତୀୟ ମନର ଆକର୍ଷଣ ଧକ୍କାରେ ତାର ଆଦର୍ଶବାଦୀ ମାନସ ଚୂର୍ଣ୍ଣ ହୋଇ ପଡ଼ିଥିଲା । ଅର୍ଥର ପ୍ରଲୋଭନ କେତେ ଉତ୍କଟ ହୋଇପାରେ, ସେ ପ୍ରଥମଥର ପାଇଁ ଉପଲବ୍ଧି କରିପାରୁଥିଲା ।

ସେ ବାରମ୍ବାର ମନକୁ ବୁଝାଉଥିଲା, 'ଗୃହକର ଗ୍ଳାନିଗଲେ ମଧ୍ୟ ମୁଁ ବଞ୍ଚିପାରିବ ।'

ତଥାପି ମନମଧ୍ୟରେ ଉଜ୍ଜ୍ୱଳ ଆଲୋକ ଜଳଉଠିବା ସମ୍ଭବପର ହୋଇ ନଥିଲା ।

ଅମ୍ଲାନର ସେଇ ପଙ୍କିଳ ମୁହୂର୍ତ୍ତରେ ଆଉ ଏକ ଆକସ୍ମିକ ତୀବ୍ର ଆଗ୍ରହ ତାକୁ ଅଶାନ୍ତ ଓ ଉଦ୍‌ବେଳିତ କରିଥିଲା ।

ସେ ଖୋଜୁଥିଲା ଜସ୍ମାର କୋମଳ ଦେହର ସେହି ସ୍ୱାଦ ତୃପ୍ତି-ରୂପ ଆଘ୍ରାଣ କରିବା ଲାଗି ।

ଜସ୍ମାର ବ୍ୟକ୍ତିତ୍ୱ ତାକୁ ଅଭିଭୂତ କରିଥିଲେ ମଧ୍ୟ ଶାଶ୍ୱତ ମିଳନର ଇଚ୍ଛାକୁ ସେ ଦମନ କରିପାରୁ ନଥିଲା ।

ତୀବ୍ର ଦ୍ୱନ୍ଦ୍ୱ ମଧ୍ୟରେ ତାର ମନ ବାତ୍ୟାନ୍ଦୋଳିତ ତରଣୀ ଭଳି ଅଥୟ ହୋଇ ଉଠିଥିଲା ।

ଅରୁଣାଭ ତାର ବ୍ୟକ୍ତିତ୍ୱର ଏହି ନୂତନ ଦିଗଟି କାହା ଆଗରେ ପ୍ରକାଶ କରିବା ସମ୍ଭବ ନଥିଲା ।

ତାର ଯନ୍ତ୍ରଣା, ତାର ଜ୍ୱଳନ ବୁଝିବା ପାଇଁ କେହି ବ୍ୟକ୍ତି ଗସ୍ପଗଡ଼ରେ ନଥିଲେ ।

ଚାକିରିଯୋଗୁଁ ଯେଉଁ ସ୍ୱଚ୍ଛନ୍ଦ୍ୟଭରା ଜୀବନ ସହ ସେ ଅଭ୍ୟସ୍ତ ହୋଇଯାଇଥିଲା; ତାକୁ ତ୍ୟାଗ କରିବାକୁ ସେ ପ୍ରସ୍ତୁତ ନଥିଲା ।

ତଥାପି ଆତ୍ମସମର୍ପଣ କରି ତାର ଆତ୍ମାକୁ କଳଙ୍କିତ କରିବା ତା ପକ୍ଷରେ ସମ୍ଭବ ନଥିଲା ।

ଅଧ୍ୟକ୍ଷ ଡ଼କାଇ କହିଥିଲେ, 'ଏଥର ତମପାଇଁ ଯେଉଁ ଯନ୍ତା ତିଆରି ହୋଇଛି ସେଥିରୁ ତମର ମୁକୁଳିବାର ସମ୍ଭାବନା କ୍ଷୀଣ ।'

ଅରୁଣାଭ ନମ୍ର ସ୍ୱରରେ କହିଥିଲା, 'କେବଳ ବିଚାର ବିଭାଗ ହିଁ ମୋତେ ଉପଯୁକ୍ତ ନ୍ୟାୟ ଦେଇପାରିବ ।'

ଈଷତ୍ ହାସ୍ୟ ସହ ଅଧ୍ୟକ୍ଷ କହିଲେ, 'ସ୍ୱୟଂ ମୁଖ୍ୟମନ୍ତ୍ରୀ ଯେଉଁଠି ସବୁଜ ପତାକା ଦେଖାଇଛନ୍ତି, ସେଠାରେ ମିଛ ସାକ୍ଷୀ ଯୋଗାଡ଼କରି ମକଦ୍ଦମା ଜିତିବା କ'ଣ ତଦନ୍ତକାରୀମାନଙ୍କ ପକ୍ଷରେ ସମ୍ଭବ ହେବନି ?'

ଅରୁଣାଭ କହିଥିଲ, 'ଏକ ନିର୍ଦ୍ଦିଷ୍ଟ ରାସ୍ତାରେ ମୁଁ ଏତେଦୂର ଗତି କରିସାରିଲଣି ଯେ ଫେରିବା ମୋ ପକ୍ଷରେ ସମ୍ଭବ ନୁହେଁ ।'

ଅଧ୍ୟକ୍ଷ ସ୍ୱଗତ କଥନ ଭଙ୍ଗୀରେ କହି ଚାଲିଥିଲେ, 'ସ୍ୱାଧୀନ ଭାରତରେ ତମେ କାହିଁକି ଜନ୍ମନେଲ ଅରୁଣାଭ ? ବିଷକୁମ୍ଭ ପୟୋମୁଖ-ମାନଙ୍କ ରାଜ୍ୟରେ ତମେ କାହିଁକି ଦେଖିଲ ସତ୍ୟର ସ୍ୱପ୍ନ ?'

ଗ୍ଲାନିକର ମାନସିକ ଜ୍ୱାଳାର ଶିଖାରେ ଅରୁଣାଭର ମୁଖ ଆନନ୍ଦ-ସତେଜ ହୋଇ ଉଠିଥିଲା ।

'ନା, ସେ ଏକା ନୁହେଁ ।'

ତା ପାଇଁ ସହାନୁଭୂତିର ଡାଲି ଅଜାଡ଼ି ଦେବାକୁ ଲୋକେ ରହିଛନ୍ତି । ସେ ଆପୋଷବିହୀନ ସଂଗ୍ରାମ କରିଚାଲିବ ଫଳାଫଳ ପ୍ରତି ଭ୍ରୂକ୍ଷେପ ନକରି ।

ଜୀବନର ଏଇ ଦାରୁଣ ସଙ୍କଟର ବେଳାରେ ଜୟୀର ଶାଶ୍ୱତ ଆକର୍ଷଣର ତୀବ୍ରତା ହ୍ରାସ ପଥରେ ଗତିକରିବାରେ ଲାଗିଥିଲା ।



ଡିସେମ୍ବର କୋଡ଼ିଏ ।

କଲେଜ ଗଭର୍ଣ୍ଣିଂବଡ଼ିର ସଭାରେ ଆଲୋଚନା ଚାଲିଛି ଅଧ୍ୟାପକ ଅରୁଣାଭର କାର୍ଯ୍ୟକଳାପ ସମ୍ପର୍କରେ ।

ଏସ୍. ଡି. ଓ ନିଜେ ଅଭିଯୋଗ ଆଣିଛନ୍ତି ଅରୁଣାଭ ଛାତ୍ରସମାଜକୁ ପଥଭ୍ରଷ୍ଟ କରୁଛି ।

କ୍ଷମତାସୀନ ଦଳର ବଡ଼ପଣ୍ଡା ସ୍ୱାର୍ଥାନ୍ଧ ଜଣେ ଆଡ଼ଭୋକେଟ୍ ଗୋପକୃଷ୍ଣ ଅଭିଯୋଗ କରୁଛନ୍ତି ଅରୁଣାଭ ଭୟଙ୍କର ଭାବରେ ସାମ୍ପ୍ରଦାୟିକ । ସେ ଓଡ଼ିଆ ତଥା ଆଦିବାସୀଙ୍କୁ ଆନ୍ଦୋଳନ ପାଇଁ ଉତ୍ତେଜିତ କରୁଛି ।

ଦୁଇହଜାର ଛଅଶହ ବର୍ଷତଳେ ଗ୍ରୀସ୍‌ଦେଶର ଶ୍ରେଷ୍ଠ ଦାର୍ଶନିକ ବିରୁଦ୍ଧରେ ଅଭିଯୋଗ ଥିଲା ସେ ପ୍ରଚଳିତ ଧର୍ମ ଧାରଣା ଉପରେ ଆଘାତ କରି ଯୁବସମାଜକୁ ପଥଭ୍ରଷ୍ଟ କରୁଛନ୍ତି ।

ତତ୍କାଳୀନ ବିଶ୍ୱର ଶ୍ରେଷ୍ଠ ମଣିଷ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ଗ୍ରୀସ୍‌ର ମାନ୍ୟଗଣ୍ୟ ଲୋକମାନେ ।

ଅଦାଲତ ନିଷ୍ପତ୍ତି ନେଇଥିଲା ଏଥେନ୍‌ସର ଜ୍ୟୋତିକୁ ବିଷପାନ ଦ୍ୱାରା ଲିଭାଇ ଦିଆଯିବ ।

ସକ୍ରେଟିସ୍‌ଙ୍କୁ ଯେଉଁମାନେ ହତ୍ୟା କରିଥିଲେ ସେମାନେ ସମସ୍ତେ ବିଶିଷ୍ଟ ଲୋକ ଥିଲେ ଓ ନ୍ୟାୟର ଧ୍ୱଜା ହାତରେ ଧରିଥିଲେ ।

ଦୁଇ ହଜାର ବର୍ଷତଳେ ପାଲେଷ୍ଟାଇନ୍‌ର ପବିତ୍ର ମାଟିକୁ ରକ୍ତ-ରଞ୍ଜିତ କରିଥିଲେ ସେ ଦେଶର ବିଶିଷ୍ଟ ଲୋକମାନେ ।

ଦୀନଦୁଃଖୀଙ୍କ ମଙ୍ଗଳ ଲାଗି ଅହରହ ପରିଶ୍ରମ କରୁଥିବା ମହାନ୍ ଆତ୍ମାଟିକୁ କ୍ରୁଶବିଦ୍ଧ କରି ଉଲ୍ଲାସରେ ଚିତ୍କାର କରି ଉଠିଥିଲେ ସେହି ଆତତାୟୀ ଦଳ ।

ଯୁଗ ଯୁଗର ଯନ୍ତ୍ରଣାର କ୍ରୁଶ ବହନ କରିବାକୁ ପଡ଼ିଚି ସାଧକ-ମାନଙ୍କୁ । ସ୍ୱାର୍ଥପର ତଥାକଥିତ ବିଶିଷ୍ଟ ଲୋକମାନେ ଲୁଣ୍ଠନ ବ୍ୟବସ୍ଥାଟିକୁ ଆର୍ଦ୍ର ରଖିବା ପାଇଁ ସବୁବେଳେ ଖୋଜି ବୁଲିଚନ୍ତି ଚିତ୍କାରିନି ସମାଜର ଦଳିତ ବନ୍ଧୁ ମଣିଷମାନଙ୍କର ରକ୍ତ ।

ଅରୁଣାଭ ଅପରାଧୀ, କାରଣ ସେ କ୍ଷମତାସୀନ କ୍ରୂର ଅସୁର-ମାନଙ୍କର ମୁକାବିଲା କରିବାର ଦୁଃସାହସ କରିଛି ।

ଆଡ଼ଭୋକେଟ୍ ଗୋପକୃଷ୍ଣ ଚିତ୍କାର କରି ଉଠିଲେ, 'ରାଜନୀତି କରି ଅଧ୍ୟାପକ ଅରୁଣାଭ ଅନୁଷ୍ଠାନର ମର୍ଯ୍ୟାଦା ହ୍ରାସ କରିଚନ୍ତି । ତାଙ୍କୁ ଦଣ୍ଡଦେବା ପାଇଁ ଆଜି ପ୍ରସ୍ତାବ ଧାର୍ଯ୍ୟ ହେବା ଦରକାର ।'

ଆଡ଼ଭୋକେଟ୍ ଗୋପକୃଷ୍ଣ ସହରର ଧର୍ମସଭାରେ ଯୋଗ ଦିଅନ୍ତି । ଗୀତା ଆଉ ଉପନିଷଦ ଚର୍ଚ୍ଚା ବେଳେ ଅତ୍ୟନ୍ତ ଆବେଗରେ ତାଙ୍କର ଚକ୍ଷୁ ଛଳଛଳ ହୋଇ ଉଠେ ।

ଗୀତା ଚର୍ଚ୍ଚା ସହ ସମାନ୍ତରାଳ ଭାବରେ ଗତିକରେ ତାଙ୍କର ସ୍ୱାର୍ଥ-ସାଧନା । ମନ୍ତ୍ରୀଙ୍କର ଅନୁଗ୍ରହରେ ସେ ଓ ତାଙ୍କର ପରିବାରର ସଦସ୍ୟମାନେ ସୁବିଧାରେ ପୂର୍ବବଙ୍ଗ ଅଞ୍ଚଳରେ ବିଚରଣ କରି ଆସିଚନ୍ତି ବର୍ଷ ବର୍ଷ ଧରି ।

ରାଜନୀତିର ଡ୍ରମ୍ ବାଜେଇ ଯେଉଁମାନେ ମଧ୍ୟାହ୍ନରେ ଅତ୍ୟାଚାରର ଅନ୍ଧକାର ସୃଷ୍ଟି କରିଚନ୍ତି, ସେମାନେ ଦୋଷୀ ନୁହନ୍ତି କାରଣ ରାଜନୀତି କରିବାକୁ ଲାଇସେନ୍ସ ସେମାନେ ପାଇଚନ୍ତି ।

ଏହି ଶ୍ରେଣୀର ଲୋକଙ୍କର ଅସଲ ରୂପଟିକୁ ଜନତା ସମକ୍ଷରେ ଉପସ୍ଥାପିତ କରି ଅରୁଣାଭ ବିକଳିଆ ଜୀବନର ଲକ୍ଷ୍ମଣଙ୍କ ଟାଣିଗାର ଡେଇଁ ପଡ଼ିଚି । ତେଣୁ ଗଞ୍ଜଣା—ଲାଞ୍ଛନା ନିଶ୍ଚିତ ଭାବରେ ଅରୁଣାଭର ପ୍ରାପ୍ୟ ।

'ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କୁ ବିରୋଧ କରିବାର ନାଗରିକ ଅଧିକାର ନିଶ୍ଚିତ ଭାବରେ ଅରୁଣାଭଙ୍କର ରହିଛି । ଏଭଳି କାମକୁ ଗଣଘାତ କୁହାଯାଇ ନପାରେ,' ଯୁକ୍ତି କରିଥିଲେ ଜାନକୀ ନନ୍ଦନ ।

'ଅରୁଣାଭ ଗ୍ରୁପ ସମାଜ ଉପରେ ଅବାଞ୍ଛିତ ପ୍ରଭାବ ପକାଉଛନ୍ତି,' ଅଭିଯୋଗ ବାଢ଼ିଥିଲେ ଏସ୍. ଡି. ଓ । ନ୍ୟାସ୍ବୋର୍ଡ଼ର ଅଧ୍ୟକ୍ଷ ରୂପ୍ ନାରାୟଣ କହି ଉଠିଥିଲେ, 'ସେଭଳି କୌଣସି ଉଦାହରଣ ମୋ ଚକ୍ଷୁରେ ପଡ଼ିନ ।'

ମନ୍ତ୍ରୀଙ୍କ ନିର୍ଦ୍ଦେଶ ଓ କୋଟଲ କର୍. ବୈଦେଶିକ ଅଫିସର୍ମାନଙ୍କ ଅନୁରୋଧ ଏଡ଼ି ନପାରି ଏସ୍. ଡି. ଓ. ବାରମ୍ବାର ଚେଷ୍ଟା କରିଥିଲେ ନିଜର ପଦମର୍ଯ୍ୟାଦାର ଅପବ୍ୟବହାର କରି ଗଭର୍ଣ୍ଣିଂବଡ଼ି ବୈଠକରେ ଅରୁଣାଭଙ୍କ ବିରୁଦ୍ଧରେ କୌଣସି ଏକ ପ୍ରସ୍ତାବ ଗୃହୀତ କରାଇଦେବା ଲାଗି । ଅଡ଼ଭୋକେଟ୍ ଗୋପକୃଷ୍ଣ ତାଙ୍କୁ ଆଶ୍ୱାସନା ଦେଇଥିଲେ ଯେ ମନ୍ତ୍ରୀ ଏବଂ ନ୍ୟୁବେନ୍ ଟେକ୍ଙ୍କ ମିଳିତ ଆକ୍ରମଣ ନିଶ୍ଚିତ ଭାବରେ ଅରୁଣାଭଙ୍କୁ ଧରାଶାୟୀ କରିଦେବ ।

ଗଭର୍ଣ୍ଣିଂବଡ଼ିର ବୈଠକରେ ଅଚଳ ଅବସ୍ଥା ସୃଷ୍ଟି ହୋଇଥିଲା । ଏସ୍. ଡି. ଓ. ଓ ଗୋପକୃଷ୍ଣ ବାବୁ ସଂଖ୍ୟାଧିକ ସଭ୍ୟଙ୍କ ବିରୋଧର ସମ୍ମୁଖୀନ ହୋଇଥିଲେ । ଗୋଷ୍ଠୀଗତ ମତଭେଦ ଯୋଗୁଁ ଯେଉଁ ସଭ୍ୟମାନଙ୍କୁ ବିଭିନ୍ନ ସମୟରେ ଅରୁଣାଭ ଆଘାତ କରିଥିଲେ, ସେମାନେ ମଧ୍ୟ ମିଥ୍ୟା ଅଭିଯୋଗ ଆଣି ଅରୁଣାଭଙ୍କୁ ଦଣ୍ଡିତ କରିବାକୁ ପ୍ରସ୍ତୁତ ନଥିଲେ ।

ଅରୁଣାଭଙ୍କ ବିରୁଦ୍ଧରେ ପ୍ରଥମ ଷଡ଼ଯନ୍ତ୍ର ବ୍ୟର୍ଥତାର ଆଘାତରେ ଖଣ୍ଡ ବିଖଣ୍ଡ ହୋଇଯାଇଥିଲା ।

ତଥାପି ସମାଜବିରୋଧୀ ଦୁଷ୍ଟ ବ୍ୟକ୍ତିମାନେ ଅରୁଣାଭ ବିରୁଦ୍ଧରେ ଏକ ନୂତନ ଷଡ଼ଯନ୍ତ୍ରର ସ୍ୱପ୍ନ ଦେଖିବାରୁ ବିରତ ହୋଇନଥିଲେ ।

※

'ସ୍ୱାଧୀନ ଭାରତ କୀ ... ... ... ଜୟ' ।

ଅଗଷ୍ଟ ପନ୍ଦର ପୁଣି ଆସିଲା । ଲୁଚ୍‌ଣ ସକାଳର ବର୍ଷଣ୍ଣ ଦୃଶ୍ୟରେ ଭରି ରହିଛି ତିନି ଦଶନ୍ଧିର କ୍ଲାନ୍ତି ଓ କାରୁଣ୍ୟ ।

ଭାଙ୍ଗି ପଡ଼ୁଛି ଗୋଟିଏ ପରେ ଗୋଟିଏ ଗଣତନ୍ତ୍ରର ମଜବୁତ୍ ସ୍ତମ୍ଭ-ଗୁଡ଼ିକ ।

ନେତାର ଆସନରେ ଆସୀନ ଥାଇକରି ମଣିଷମାନେ ସ୍ୱାଧୀନ ଭାରତର ସ୍ୱପ୍ନ, ଆଶା ଓ ଆକାଂକ୍ଷାକୁ ବିଡ଼ମ୍ବିତ କରୁଛନ୍ତି ଅତି କଦର୍ଯ୍ୟ ଭାବରେ ।

ସ୍ୱାଧୀନତା ଆସିଲା କାହାପାଇଁ ?

ଆନ୍ତର୍ଜାତୀୟ ବ୍ୟାପାରୀଗୋଷ୍ଠୀର ବିଦ୍ରୂପ ହସରେ ଫାଟି ପଡ଼ୁଛି ଭାରତର ଧୂସର ଆକାଶ ।

ଧନାଢ୍ୟ ଦେଶର ଦାମିକା ଅପ୍ରୟୋଜନୀୟ ସାମଗ୍ରୀର ଅଳିଆଗଦା ଗଢ଼ି ଉଠୁଛି ଭାରତବର୍ଷରେ ।

ସ୍ଲୋଗାନ୍ ସର୍ବସ୍ୱ ଯୋଜନାର, କାଗଜ ସର୍ବସ୍ୱ ବାସ୍ତବତାର ସମସ୍ତ ମେଳ ଶେଷ ହୋଇ ରହିଯାଇଛି କେବଳ ଛଳନା ଓ ପ୍ରବଞ୍ଚନା ଗୁଡ଼ିଏ । ସ୍ୱାଧୀନତା ମିଳିଛି ଶୋଷଣକୁ ।

ସ୍ୱାଧୀନତା ଲାଭ କରିଛନ୍ତି ଖଦଡ଼ଧାରୀ ନେତା, ନେତାଙ୍କର ଆଶୀର୍ବାଦପ୍ରାପ୍ତ ଚୋରାଚାଲାଣ କାରବାରିଆ, ବ୍ୟବସାୟୀ, କଣ୍ଟ୍ରାକ୍ଟର ପ୍ରମୁଖ ଦୂଷିତ ଜଗତର ଲାଙ୍ଗୁଡ଼ିଆମାନେ ।

ଅରୁଣାଭ ସାଥିରେ ବୁଲୁଛନ୍ତି କେତେଜଣ ଆଦିବାସୀ ପୁରୁଷ ଓ ସ୍ତ୍ରୀ । ଆଖିରେ ସେମାନଙ୍କର ଅକଳନୀୟ ଉଦାସୀନତା । ବାରମ୍ବାର ପ୍ରର୍ଦ୍ଧିତ ଆହ୍ୱାନ

ଫଳରେ କଡ଼ ଲେଉଟାଇଚି ସେମାନଙ୍କର ପୌରୁଷ । ମ୍ୟାଗ୍ନୋଚାଟ ତାଙ୍କ ପାଇଁ ସଂଗ୍ରାମ କରିବା ଭୁଲ ମନେ କରନ୍ତି ସେମାନେ । ନିଜଦେଶରେ ଅବହେଳିତ ହେବାର ଦୁର୍ଭାଗ୍ୟ ଯେ ସେମାନଙ୍କର କାପୁରୁଷତାର କୁଫଳ, ଏକଥା ସେମାନେ ବୁଝିପାରନ୍ତି ।

ପାହାଡ଼ କଡ଼ ଲେଉଟାଇଚି । ସ୍ଥାବର ଜଙ୍ଗମ ହୋଇଚି । କନ୍ଦାଖିଆ ଝିଅଭଳିକପିଆ ମଣିଷ ଚାଲିଚି ରାଜପଥରେ ।

ପୋଲିସ ଇନସ୍‌ପେକ୍ଟର ଶୋଭାଯାତ୍ରା ପାଇଁ ଅନୁମତି ମାଗୁଥିବା ଅରୁଣାଭଙ୍କୁ ପୂର୍ବରୁ ସତର୍କ କରି ଦେଇଚନ୍ତି ।

'ଆପଣ ନିଆଁକୁ ନେଇ ଖେଳୁଚନ୍ତି ଅଧ୍ୟାପକ ମହାଶୟ ।'

'ନିଆଁ ? ନିଆଁ ସଭ୍ୟତାର ଜନକ । ନୃଶଂସ ଅତ୍ୟାଚାରର ମୁଗୁନିପଥର ହୃଦୟ ମଧ୍ୟ ତରିଯାଏ ନିଆଁ-ଧାସ ବାଜିଲେ ।'

'ଆଜି ମୁଖ୍ୟମନ୍ତ୍ରୀ ଆସୁଚନ୍ତି । ଆପଣଙ୍କ ସାଥିମାନେ ଅଶିକ୍ଷିତ । ସେମାନେ ଯଦି ଉଚ୍ଛୃଙ୍ଖଳ ହୁଅନ୍ତି ।'

'ସେମାନେ ଶୃଙ୍ଖଳିତ ବରଂ ଉଚ୍ଛୃଙ୍ଖଳ ହେଉଚନ୍ତି ଏ ରାଜ୍ୟର ମନ୍ତ୍ରୀମାନେ ଓ ଆପଣମାନେ ।'

'ଆପଣ ଜଣେ କର୍ମଚାରୀ । ତଥାପି ଆପଣ ଏ ଦୁଃସାହସ କରୁଚନ୍ତି ।'

'ପରାଧୀନ ଭାରତରେ ଆପଣମାନେ ଠିକ୍ ଏକଥା କହୁଥିଲେ । କିନ୍ତୁ ଇତିହାସର ରଥଚକ ତା ରାସ୍ତାରେ ଗଡ଼ି ଚାଲିଲା ।'

'ଏଥର ଭାରତ କ'ଣ ସ୍ୱାଧୀନ ବୋଲି ଆପଣ ଭାବୁଚନ୍ତି ।'

'ଏତେବେଳେ ଆପଣ କଥାଭଳି କଥାଟିଏ କହିଲେ । ଆମେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ମୂଳଦୁଆ ପକାଉଚୁ ।'

'ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ?'

'ପ୍ରଥମ ସ୍ୱାଧୀନତା ସଂଗ୍ରାମ ଫଳରେ ଗୋରାମାନେ ଏ ଦେଶର ଗାଦିରୁ ଅପସରି ଗଲେ । କିନ୍ତୁ ସେମାନଙ୍କ ବଦଳରେ ଯେଉଁ କଳାମାନେ ଗାଦିରେ ବସିଲେ, ସେମାନେ ଗୋରାଙ୍କଠାରୁ ହଜାର ଗୁଣରେ ମାରାତ୍ମକ ।'

'ଆପଣଙ୍କ କଥାରେ ରାଜନୀତିର ଗନ୍ଧ ରହୁଛି । ମୋ ମତରେ ରାଜନୀତି ଆଉ ବ୍ଲକରର ସହାବସ୍ଥାନ ଉଚିତ୍ ନୁହେଁ ।'

'ନିର୍ବାଚିତ ପ୍ରତିନିଧିଙ୍କ ଆଗରେ ଯୁକ୍ତିଯୁକ୍ତ ଦାବୀ ଥୋଇବା କିମ୍ବା ଦୁର୍ନୀତିଗ୍ରସ୍ତ ଶୋଷକଙ୍କର ମୁଖା ଖୋଲିବା ଯଦି ରାଜନୀତି ହୁଏ, ତେବେ ସେଭଳି ରାଜନୀତିକୁ ମୋ ଜୀବନରୁ ବାଦ୍ ଦେଇପାରିବିନି ।'

'ମୁଁ ଯାହା ଉଚିତ୍ ମନେ କରୁଛି, କରୁଛି । ଉଚ୍ଚସ୍ତରର ଲୋକେ ଆପଣଙ୍କ କାର୍ଯ୍ୟକୁ ପସନ୍ଦ କରୁନାହାନ୍ତି ।'

ଅରୁଣାଭ ଗାଇ ଉଠିଲା, 'ଲହରର ନିମନ୍ତ୍ରଣ, ବେଳାପରେ ରହିବ କିପରି ?'

ମୁଖ୍ୟମନ୍ତ୍ରୀଙ୍କ ଆଗମନ ପାଇଁ ଚଞ୍ଚଳ ହୋଇ ଉଠିଛନ୍ତି ବ୍ୟବସାୟୀ ଗୋଷ୍ଠୀ । ରାସ୍ତାର ଲୁହଲହୁ ମଣ୍ଡା ଉପରେ ସଜ୍ଜିତ ହୋଇଛି ଚମତ୍କାର ତୋରଣଗୁଡ଼ିଏ ।

ମୁଖ୍ୟମନ୍ତ୍ରୀଙ୍କ ସହ ସାକ୍ଷାତ୍ ପାଇଁ ଡାକବଙ୍ଗଳାରେ ଅପେକ୍ଷା କରି କରି କ୍ଳାନ୍ତ ହୋଇପଡ଼ିଛନ୍ତି ଅରୁଣାଭର ସାଥୀମାନେ । ସହରର ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ସାନ୍ନିଧ୍ୟରେ ଅନୁଷ୍ଠିତ ପ୍ରୋଗ୍ରାମ୍‌ଗୁଡ଼ିକର ବହୁଳତା ଫଳରେ ଆଦିବାସୀ ଲୋକଙ୍କୁ ସାକ୍ଷାତ ସୁଯୋଗ ମିଳିଛି ରାତି ଏଗାରଟାରେ ।

ମୁଖ୍ୟମନ୍ତ୍ରୀ ଉପର ଠାଉରିଆ ଭାବରେ ଦଶ ପନ୍ଦର ମିନିଟ୍ ଲୋକଙ୍କ ଅଭିଯୋଗ ଶୁଣି ଦରଖାସ୍ତ ମାଗିଛନ୍ତି ।

ହେମାଳ ବସ୍ତିରେ ଭୁବନେଶ୍ୱର ଅପେକ୍ଷାରେ ମଧ୍ୟ ଯୁକ୍ତି ଯୁକ୍ତ ଦାବୀଗୁଡ଼ିକ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିବା ସମ୍ଭବ ହୋଇପାରି ନାହିଁ ।

ଅରୁଣାଭ ବ୍ୟଥିତ ହୋଇଛନ୍ତି । ରାତି ଗୋଟାଏବେଳେ ଶୋଇବାକୁ ଯିବା ପୂର୍ବରୁ ବାପୁଜୀଙ୍କ ଫଟୋର ପଦତଳେ ମସ୍ତକନତ କରି ସେ ଲୁହ ଝରିଛନ୍ତି ।

'ଆପଣ ନିଷ୍ଠୁର ହର୍ତ୍ତାଙ୍କ ହସ୍ତରେ ଜୀବନସର୍ବସ୍ୱ ଅର୍ପଣ କରିଦେଲେ ବାପୁଜୀ । ଆଜି ସେହି ନିଷ୍ଠୁର ସର୍ପଙ୍କ ବଂଶଧରମାନଙ୍କ ଦଂଶନରେ ସାରା ଭାରତ ନୀଳ ହୋଇଯାଇଛି ।'



ଶେଷ ବନ୍ଧନ ଛୁଟିଯାଇଛି । ଥରେ ଥରେ ହାତରୁ ଟେଲିଗ୍ରାମ୍ ଖସି ପଡ଼ିଲା । ଚକ୍ଷୁପ୍ରତ୍ତରୁ ଅଶ୍ରୁ ଅବିରାମ ଗତିରେ ତଳକୁ ଗଡ଼ିଚାଲିଲା । ଅରୁଣାଭର ଜନ୍ମଦାତା ଆଉ ଇହ ଜଗତରେ ନାହାନ୍ତି ।

ଦୁଃଖର ସହିତ ଏକ ପ୍ରକାର ହାଲ୍‌କାଭାବ ଅରୁଣାଭର ଚିତ୍ତ-ଜଗତକୁ ଆଚ୍ଛନ୍ନ କରିଛି ।

ଏଥର ସଂସାରର ବନ୍ଧନ ଆଉ ଅରୁଣାଭର ଯାତ୍ରା ପଥରେ ବାଧା ସୃଷ୍ଟି କରିପାରିବନି ।

ଅରୁଣାଭ ଆଗେଇଯିବ ତାର ସାଧନାର ପଥରେ ଦୁରନ୍ତ ଅଭୀପ୍ସା ଆଉ ଅପରାଜେୟ ମନୋବୃତ୍ତି ନେଇ ।

ଅଧ୍ୟକ୍ଷଙ୍କ ଟେବୁଲ୍ ଉପରେ ଛୁଟି ଦରଖାସ୍ତ ଓ ଟେଲିଗ୍ରାମ୍ ଥୋଇଦେଇ ଝଡ଼ବେଗରେ ଚାଲି ଆସିଲା ଅରୁଣାଭ ।

ପରବର୍ତ୍ତୀ ବାସ୍‌ରେ ବସ୍ତୁଗଡ଼ ଛାଡ଼ିବା ପାଇଁ ତା ହାତରେ ସମସ୍ତ ସ୍ୱଳ୍ପ ଥିଲା ।

ବହୁଦିନ ପରେ ଏକ ଦୁଃଖାନ୍ତ ପରିବେଶରେ ଜନ୍ମମାଟିରେ ପାଦ ରଖିଲା ଅରୁଣାଭ । ଓଡ଼ିଶାର ଅନ୍ୟ ବହୁ ଗ୍ରାମ ଭଳି ଅରୁଣାଭର ଗାଁ ମଧ୍ୟ ଶ୍ରୀହୀନ ହୋଇଯାଇଛି । ବାତ୍ୟା ଓ ବନ୍ୟାରେ ଭାଙ୍ଗି ପଡ଼ିଛି ଗ୍ରାମବାସୀଙ୍କର ଆର୍ଥିକ ମେରୁଦଣ୍ଡ ।

ପିତାଙ୍କ ଶେଷକୃତ୍ୟ ସମାପନ କରି ଅରୁଣାଭ, ନିଶ୍ଚିନ୍ତରେ ନିଃଶ୍ୱାସ ମାରିଲା । ତାର ମନେ ପଡ଼ିଗଲା କାମ୍ୟୁଙ୍କ 'ଦ ରେବେଲ୍' ପୁସ୍ତକର କେତୋଟି ପଂକ୍ତି—

'ଯେଉଁ ଲୋକ ଜୀବନ ପ୍ରତି ମମତାଶୂନ୍ୟ; ତାର ସ୍ୱାଧୀନତା ଅସୀମ । ସାରା ପୃଥିବୀକୁ ଚ୍ୟାଲେଞ୍ଜ କରିବା ତାହାଠାରୁ ସେ ଅଧିକାଂଶ ।'

ଅରୁଣାଭ ସପୁରଣ୍ଡ ଆସିଲାପରେ ସପୁରଣ୍ଡର ବାୟୁମଣ୍ଡଳରେ ପରିବର୍ତ୍ତନର ପଦଚିହ୍ନ ସ୍ପଷ୍ଟ ହୋଇ ଉଠିଲା । ଆଦିବାସୀ ଗାଁ ଗୁଡ଼ିକରେ ବହୁ ସମୟ ଅତିବାହିତ କରି ଅରୁଣାଭ ସେମାନଙ୍କର ସମସ୍ୟାଗୁଡ଼ିକ ବିଶ୍ଳେଷଣ କରିବାକୁ ଲାଗିଲା ।

ଅଧକ୍ଷ ଦିନେ ଅରୁଣାଭକୁ ଡ଼ାକି କହିଲେ, "ସାବଧାନ ହୁଅ ଅରୁଣାଭ ! ସହରର ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତି ତମ ବିରୁଦ୍ଧରେ ଏକଜୁଟ୍ ହୋଇଛନ୍ତି ।'

ଅରୁଣାଭ ସବୁଦିନ ଭଳି ମୃଦୁହସ ସହ ଅଧକ୍ଷଙ୍କୁ ଧନ୍ୟବାଦ ଦେଇ କକ୍ଷରୁ ବର୍ହିଗତ ହେଲା ।

ଅରୁଣାଭର କାର୍ଯ୍ୟକଳାପ ଫଳରେ ଦିନକୁ ଦିନ ସପୁରଣ୍ଡର ରାଜନୈତିକ ବାତାବରଣର ତାପ ଓ ଜ୍ୱରମାତ୍ରା ବୃଦ୍ଧି ପାଇବାରେ ଲାଗିଲା । ତା'ପରେ ଦିନେ ସହରରେ ଖବର ଖେଳିଗଲା ଅରୁଣାଭର ସାଥିମାନେ ଦୁଇଟି ଟ୍ରକ୍ ସ୍ମଗଲ୍ଡ଼ ମାଲ୍ ସହ ଜବତ୍ କରି ପୋଲିସ୍ ଜିମା ଦେଇଛନ୍ତି ।

ମନ୍ତ୍ରୀଙ୍କୁ ମୋଟା ଟଙ୍କା ଚାନ୍ଦା ଦେଉଥିବା ବ୍ୟବସାୟୀଙ୍କ ଟ୍ରକ୍ ଜବତ୍ କରି ଅରୁଣାଭ ଛାତ୍ରଶିବିରକୁ ଚଞ୍ଚଳ କରିଦେଇଥିଲା । ମନ୍ତ୍ରୀ ଶ୍ରୀ ଦମକାଙ୍କ ଜୋର୍‌ଦାର୍ ହସ୍ତକ୍ଷେପ ଫଳରେ ପୋଲିସ୍ ସେହି ବ୍ୟବସାୟୀଙ୍କ ବିରୁଦ୍ଧରେ କେସ୍ କରିବାକୁ ସାହସ କରି ନଥିଲେ ।

ଦିନେ ଅରୁଣାଭ ନିଜ ରୁମ୍‌ରେ ଚିନ୍ତାମଗ୍ନ ଥିବା ବେଳେ, ତା'ପରେ କାହାର ଲଘୁ କରାଘାତ କବାଟର ବିଶ୍ରାମରେ ବାଧା ସୃଷ୍ଟି କଲା ।

ଅରୁଣାଭ କବାଟ ଖୋଲିଦେଇ ଚମକି ପଡ଼ିଲା । ଅତି ବ୍ୟସ୍ତଭାବରେ ଘର ଭିତରକୁ ପଶି ଆସିଲା ଜସ୍ମୀ ।

ସଦା ହସ ହସ ଜସ୍ମା ମୁହଁରେ କେଉଁଠାରୁ ଦୁଃଖ ପ୍ରଲେପ ବିସ୍ତୃତ କରିଥିଲା । ଜସ୍ମା ମଝିବେଳେ ଟେବୁଲ୍‌ରେ ବସି ତାର ଦୁଇ ଉଜ୍ଜ୍ୱଳ ଚକ୍ଷୁ ଅରୁଣାଭ ଉପରେ ନ୍ୟସ୍ତ କରିଥିଲା ।

'କି ଆଦେଶ ଦେବ,' ଅରୁଣାଭ ଲଘୁ ପରିହାସରେ ବାତାବରଣକୁ ହାଲ୍‌କା କରିବାକୁ ଚେଷ୍ଟା କଲା ।

'ସୁଇସାଇଡ୍ କରିବା ପାଇଁ ଆପଣ ଏତେ ବ୍ୟାକୁଳ କାହିଁକି ?'

'ମୁଁ ହେମିଂୱେ ଗୋଷ୍ଠୀର ନୁହେ । ମୁଁ ପ୍ରୋମିଥିୟୁସ୍ କ୍ୟାମ୍ପର ଲୋକ ।'

'ଉଭୟଙ୍କର ପରିଣତି ଏକା ଧରଣର । ହେମିଂୱେ ସ୍ୱହସ୍ତରେ ଜୀବନଘାତ ଲଭିଇ ଦେଇଥିଲେ । ପ୍ରୋମିଥିୟୁସ୍··· ··· ···'

'ଅଗ୍ନି ଚୋରର ପ୍ରୋମିଥିୟୁସ୍ ହସି ହସି ଜିଅସ୍‌ଙ୍କ କ୍ରୋଧର ଦଣ୍ଡାଧୀନ ହୋଇଥିଲେ ।'

'ଅନନ୍ତକାଳ ଯନ୍ତ୍ରଣାର ଶିକାର ହେବା କ'ଣ ମୃତ୍ୟୁର ଅନ୍ୟରୂପ ନୁହେ ?' ଜସ୍ମା ଅସନ୍ତୁଷ୍ଟ ଭାବରେ କହି ଉଠିଲା ।

ଅରୁଣାଭ ଜସ୍ମାର ନୂତନରୂପ ଉପଭୋଗ କରୁଥିଲା । କ୍ରୋଧ ଓ ଦୁଃଖର ଆଧିକ୍ୟ ଜସ୍ମାକୁ ଉତ୍ତେଜିତ କରିଥିଲା । ସଦା ହାସ୍ୟମୟୀ ଜସ୍ମାର ଲାବଣ୍ୟରେ ଏକ ପ୍ରକାର ସ୍ନିଗ୍ଧତା ଥିଲା, ଯାହା ଅରୁଣାଭକୁ ସର୍ବଦା ଆକର୍ଷିତ କରୁଥିଲା । ଏଥର ଗତାନୁଗତିକତାରେ ବାହାରିଥିବା ବ୍ୟତିକ୍ରମ ଅରୁଣାଭକୁ ଅଧିକ ଉଲ୍ଲସିତ କରିଥିଲା କାରଣ ଜସ୍ମାର ଅନ୍ୟ ଏକ ମନୋରମ ରୂପ ଯାହା ଅରୁଣାଭର ଚକ୍ଷୁପଥରେ ପୂର୍ବରୁ ଅଗମ୍ୟ ଥିଲା, ପ୍ରଥମଥର ପାଇଁ ଆତ୍ମପ୍ରକାଶ କରିଥିଲା । ଦୁରନ୍ତ ଆବେଗର ଶିହରଣରେ ଚଞ୍ଚଳିତ ଅରୁଣାଭ ଜସ୍ମାକୁ ବାହୁ ବନ୍ଧନରେ ଆବଦ୍ଧ କରି ତାର ଓଷ୍ଠାଧାରରେ ଏକ ମଧୁର ଚୁମ୍ବନ ଆଙ୍କିଦେଲା ।

'ତମେ ଏକ ଇଗଲ୍‌କୁ ଭୂମିସ୍ପର୍ଶ କରିବା ପାଇଁ ବ୍ୟସ୍ତ କାହିଁକି ଜସ୍ମା ?'

ଜସ୍ନା ନିରୁତ୍ତର ଥିଲ, ତାର ଚକ୍ଷୁର ଦୁଇପ୍ରାନ୍ତରେ ଦୁଇଟି ଅଶ୍ରୁ ଚଳକୁ ଗଡ଼ିବା ପାଇଁ ଚେଷ୍ଟା କରୁଥିଲେ ।

'ମୋତେ ଦୁର୍ବଳ କରିଦିଅନି ଜସ୍ନା । ତମର ପ୍ରେରଣାର ବେଦୀ-ଉପରେ ଠିଆ ହେବା ଫଳରେ ହିଁ ମୋର ଯାନକୁ ପୂର୍ଣ୍ଣ ଲକ୍ଷରେ ଘୁରାଇବାକୁ ମୁଁ ସ୍ୱପ୍ନ ଦେଖିପାରୁଛି ।'

'ତମେ ବୁଝିପାରୁନ, ତମେ ମୋର... ମୋ ପକ୍ଷରେ କେତେ... ତମବିନା ବଞ୍ଚିବା ମୋ ପକ୍ଷରେ ଅସମ୍ଭବ !'

'ମୁଁ ତା ବୁଝିଛି ଜସ୍ନା ।'

'ତାହେଲେ ତମେ ଏ ସ୍ରୋତରେ ପାଦ ଦେଉଚ କାହିଁକି ?'

'ମୁଁ କ'ଣ ଏବେ ନୂଆକରି ଏ ସ୍ରୋତର ପଥଯାତ୍ରୀ ହୋଇଛି ?'

'ତମ ଆଘାତରେ ଛାତ୍ର ବ୍ୟବସାୟୀ ଗୋଷ୍ଠୀ ଲକ୍ଷେଟଙ୍କାର ପାଣ୍ଠି ସୃଷ୍ଟି କରିଚନ୍ତି ତମକୁ ଏ ଧରାପୃଷ୍ଠରୁ ବିଦାୟ ଦେଇଦେବା ଲାଗି ।

'ଲକ୍ଷେଟଙ୍କା ତ ବେଶୀ ହୋଇଗଲେ । ଏ ଦେଶରେ ପାଞ୍ଚ, ଦଶ ହଜାର ଟଙ୍କା ଝିଙ୍କି ଦେଲେ ବି ଯେ କୌଣସି ସଚ୍ଚରିତ୍ର ନାଗରିକକୁ ସେ ପୁରକୁ ପଠାଇ ଦିଆଯାଇପାରୁଛି ।'

'କେତେ ସହଜରେ ତମେ ଏକଥା କହିପାରୁଚ ।' ଜସ୍ନାର କଣ୍ଠ-ଥିଲ ଅଶ୍ରୁରୁଦ୍ଧ ।

'ସ୍ୱାଧୀନତା ସଂଗ୍ରାମର ଜଣେ ଶହୀଦ୍‌ର କନ୍ୟାଠାରୁ ମୁଁ ଏ ଧରଣର କଥାବାର୍ତ୍ତା ଆଶା କରେନି ।'

ଜସ୍ନା ଅସ୍ୱାଭାବିକ ଭାବରେ ଗମ୍ଭୀର ହୋଇ ଉଠିଲ । ଚକ୍ଷୁରେ ତାର ଫୁଟି ଉଠିଲା ଦୃଢ଼ ପ୍ରତିଜ୍ଞାର ମୁଦ୍ରା ।

'ତମେ ତମରାସ୍ତାରେ ଅଟଳ । ମୁଁ ବି ଭୁଲିଲି ମୋର ରାସ୍ତା ବାଛିନେବା ପାଇଁ ।'

'ଜୟା ! ତୁମେ ଆଉ କିଛି ସମୟ ବସ । ତମ ସହିତ ଗୁରୁତ୍ୱପୂର୍ଣ୍ଣ କଥା ବାର୍ତ୍ତା ଅଛି ।'

ଜୟା ନୀରବରେ ବସି ରହିଲା ।

ଅରୁଣାଭ କହିଲା, 'ବାପାଙ୍କ ମୃତ୍ୟୁପରେ ମୁଁ ପୂରାପୂରି ନିଃସଙ୍ଗ ହୋଇ ପଡ଼ିଛି । ମୋର ଭଉଣୀମାନଙ୍କୁ ଦେଖଭାଳ କରିବାପାଇଁ ତମେ କ'ଣ ଆଗେଇ ଆସିବନି ?'

'ଅରୁଣାଭ ସ୍ୱରର କାରୁଣ୍ୟ ଓ ଆଖିର ଲୁହ ଜୟାକୁ ପ୍ରଭାବିତ କରିଥିଲା । ସେ ଅରୁଣାଭକୁ ଦୁଇହାତରେ ଆଲିଙ୍ଗନ କରି କହିଲା, 'ତମ ଆଖିର ଲୁହ ମୁଁ ସହିପାରିବିନି ପ୍ରିୟ, ମତେ କୁହ ମୁଁ କ'ଣ କରିବି ?'

ଅରୁଣାଭ ତାର ଛଳ ଛଳ ନୟନ ହସ୍ତକୁ ଜୟା ଉପରେ ନ୍ୟସ୍ତ କରି କହିଲା, 'ମତେ ଜବାବ୍ ଦିଅ ଜୟା, ଆସନ୍ତା ମାସରେ ତମେ ବିବାହ-ସୂତ୍ରର ବନ୍ଧନକୁ ସ୍ୱୀକୃତି ଦେବ ।'

'ମୁଁ ବିବାହ ପାଇଁ ପ୍ରସ୍ତୁତ ପ୍ରିୟ । ମୋର ସୌଭାଗ୍ୟକୁ ମୁଁ ବେଶୀଦିନ ଦୂରେଇ ରଖିବାକୁ ଇଚ୍ଛୁକ ନୁହେଁ ।'

ତାପରେ ସେ କ୍ୟାଲେଣ୍ଡରକୁ ଆଣି ଟେବୁଲ୍ ଉପରେ ଥୋଇ କହିଲା, 'ଠିକ୍ ଏକ ବର୍ଷପରେ ଏଇ ମେ କିମ୍ବା ଜୁନ୍ ମାସରେ ଆମର ବିବାହ ହେବ । ଏଇ ବର୍ଷଟି ମୁଁ ଅଜ୍ଞାତବାସରେ କଟାଇବି ତମର ଯୋଗ୍ୟା ହେବାପାଇଁ ।

'ମତେ ଲଜ୍ଜା ଦିଅନି ଜୟା । ମୋର ମନେ ହେଉଛି ମୁଁ ତୁମର ଯୋଗ୍ୟ ନୁହେଁ ।'

ମିନତିଭରା ସ୍ୱରରେ ଜୟା କହିଲା, 'ମତେ ଗୋଟିଏ ବର୍ଷ ସମୟ ଦିଅ ପ୍ରିୟ । ଗୋଟିଏ ବର୍ଷପରେ ଆମେ ଗଢ଼ିବା ଆମର କ୍ଷୁଦ୍ର ନୀଡ଼ଟି ।'

ଅରୁଣାଭ ଏକ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲା ।

ଅରୁଣାଭକୁ ଏକ ମଧୁର ଚୁମ୍ବନରେ ଆବେଶଗ୍ରସ୍ତ କରିଦେଇ କକ୍ଷତ୍ୟାଗ କରିଥିଲା ଜଧ୍ୟା ।

କକ୍ଷ ମଧ୍ୟରେ ପଦଚାରଣ କରୁ କରୁ ଗୁଣୁଗୁଣୁ ଆବୃତ୍ତି କରିଥିଲା ଅରୁଣାଭ ।

ସେ ମୋହନ କର          କଣ୍ଠେ ମୋ ଢାଳ
ବନ୍ଧି ଅଧରେ          ଗାଢ଼େ ଦେଇ ଜାଳ
ସମ୍ରାଟ ସାଜା କରିଦେଲ ରାଣୀ ମତେ
ଜଗତ ସାଏନା ପ୍ରାତେ ।

ଅରୁଣାଭ ଥିଲା ତୃପ୍ତ । ତାର ମନ ଆକାଶରେ ଭାସି ବୁଲୁଥିଲେ ଅଗଣିତ ରଙ୍ଗୀନ୍ ବେଲୁନ୍ ଓ ଫୁଲଝରି ।



ଧୀରେ ଧୀରେ ସହରର ବାତାବରଣରେ ପରିବର୍ତ୍ତନ ଆସିବାକୁ ଲାଗିଲା । ଶାସକଶ୍ରେଣୀର ସଂଗ୍ରାମ ପିପାସା ସହ ବ୍ୟବସାୟୀ ଓ ଅଫିସର୍-ଗୋଷ୍ଠୀର କ୍ରୋଧ ଓ ଘୃଣାର ମାତ୍ରା ସମାନ୍ତରାଳ ଭାବରେ ବଢ଼ି ଚାଲିଥିଲା ।

ଜସ୍ମାର ଅନୁପସ୍ଥିତିର କାରଣ ଖୁର୍ଶିଦ୍ ଅରୁଣାଭ ନିକଟରେ ସ୍ପଷ୍ଟ ହୋଇ ଉଠିଥିଲା । ମାଲବରେ ନିଷ୍ଠାର ସହ ପର୍ବତ ଘେରା କ୍ଷୁଦ୍ର କ୍ଷୁଦ୍ର ଦୂର ଆଦିବାସୀ ଗାଁ ଗୁଡ଼ିକରେ ଜସ୍ମା ତାର ସଂଗଠନ ଗଢ଼ି ଚାଲିଥିଲା ।

ସହରରେ ଖାଦ୍ୟାଭାବ ଦେଖାଦେଇଥିଲା । ଅନାହାର ମୃତ୍ୟୁ ସହର ଓ ସହର ତଳ ଅଞ୍ଚଳରେ ବହୁ ସଂଖ୍ୟାରେ ଘଟିବାକୁ ଲାଗିଲା । ପରିସଂଖ୍ୟାନର ମିଥ୍ୟା ପତାକା ଉଡ଼ାଇ ସରକାର ପକ୍ଷରୁ ନିର୍ଭେଜାଲ୍ ସତ୍ୟକୁ କବରସ୍ଥ କରି ଦିଆଗଲା ।

ଦୁସ୍ଥ ମଣିଷଙ୍କ ଅଭାବ ଓ ଯନ୍ତ୍ରଣାକୁ ପୁଂଜି ଆକାରରେ ରୂପାନ୍ତର କରିବା ପାଇଁ ସହରର ଧନୀ ବ୍ୟବସାୟୀ ସୁନ୍ଦର ମୂର୍ତ୍ତି ଅଣ୍ଟା ଭିଡ଼ିଥିଲେ । କ୍ଷମତାସୀନ ଦଳର ଜିଲ୍ଲା କମିଟିର ସମ୍ପାଦକ ସୁନ୍ଦର ମୂର୍ତ୍ତିଙ୍କ ଦୁଃସାହସ କୌଣସି ବାଧାକୁ ଭ୍ରୂକ୍ଷେପ କରିବା ଅବସ୍ଥାରେ ନଥିଲା ।

ଅରୁଣାଭକୁ ଅଣସ୍ୱସ୍ତି କରିଦେବା ପାଇଁ ଦୁଇ ଦୁଇ ଥର ବ୍ୟର୍ଥ ଉଦ୍ୟମ ହୋଇଥିଲା । ପ୍ରତ୍ୟେକ ଥର ଅରୁଣାଭର ସାଥୀ ଆଦିବାସୀ ଯୁବକ-ମାନଙ୍କର ସଂଯମ ଓ ସାହସ ଭଡ଼ାଟିଆ ଗୁଣ୍ଡାମାନଙ୍କୁ ବିଫଳ କରାଇ-ଥିଲା ।

ସହରର ଓ ବାହାରର ନାମଜାଦା ଗୁଣ୍ଡାମାନେ ଗାଁର ଅଶିକ୍ଷିତ ଚାଷୀ ଯୁବକମାନଙ୍କ ପ୍ରତିରୋଧର ସମ୍ମୁଖୀନ ହୋଇ ଅଜସ୍ର ଅର୍ଥଲାଭରୁ ବଞ୍ଚିତ ହୋଇଥିଲେ ।

ପ୍ରଥମ ଉଦ୍ୟମ ପରେ ଯେତେବେଳେ ଦୁର୍ଦ୍ଧର୍ଷ ଡେକାୟତ ଗୁଣ୍ଡାମାନଙ୍କୁ ଗାଉଁଲି ଯୁବକମାନେ ପୋଲିସ୍ ହାତରେ ଅର୍ପଣ କଲେ, ଅଫିସରମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ରାଜନୈତିକ ହସ୍ତକ୍ଷେପ ଫଳରେ ଏ ଗୁଣ୍ଡାମାନେ ଋଣ ମୋଡ଼ ମୋଡ଼ ଥାନା ତ୍ୟାଗ କରିଥିଲେ । ଏମାନଙ୍କ ବିରୁଦ୍ଧରେ କୌଣସି ମକଦ୍ଦମା କରିବାପାଇଁ ପୋଲିସ୍ ସାହସ କରିନଥିଲା ।

ପୋଲିସ୍‌ର ନିଷ୍କ୍ରିୟତା ଅନୁଗାଳର ବନ୍ଧୁମାନଙ୍କୁ ବିଚଳିତ ଓ ବିସ୍ମିତ କରିଥିଲା । ତେଣୁ ଦ୍ୱିତୀୟଥର ଯେଉଁତେବେଳେ ଅନୁଗାଳକୁ ହତ୍ୟା ଉଦ୍ୟମ କରି ଗୁଣ୍ଡାମାନେ ଧରାପଡ଼ିଲେ, ଆଦିବାସୀ ଯୁବଗୋଷ୍ଠୀ ସେମାନଙ୍କୁ ଆଉ ପୋଲିସ୍ ହାତରେ ଅର୍ପଣ କଲେ ନାହିଁ । ସାରା ସହରକୁ ଆଶ୍ଚର୍ଯ୍ୟ ଚକିତ କରି ସେମାନେ ଗୁଣ୍ଡାମାନଙ୍କୁ ଉଭାବନ କରିଦେଲେ ।

ଅନୁଗାଳର ହତ୍ୟା ଉଦ୍ୟମରେ ନିଷ୍କ୍ରିୟତା ଆଦର ନେଇଥିବା ପୋଲିସ୍ ଗୁଣ୍ଡାମାନଙ୍କ ଅନ୍ତର୍ଦ୍ଧାନରେ ବିଚଳିତ ହୋଇ ଉଠିଥିଲା । କୋରାପୁଟର ବଣଜଙ୍ଗଲ ଚନ୍ନ ଚନ୍ନ କରି ଅନୁସନ୍ଧାନ କରି ଏକ ପାହାଡ଼ୀ ଗୁହାଭିତରେ ସେମାନେ ଗୁଣ୍ଡାମାନଙ୍କୁ ଆବିଷ୍କାର କରିଥିଲେ । ପରେ ପରେ କେତେଜଣ ଆଦିବାସୀ ଯୁବକଙ୍କ ବିରୁଦ୍ଧରେ ମୋକଦ୍ଦମାମାନ ଦାୟର କରାଯାଇଥିଲା । ମନ୍ତ୍ରୀ ଦମ୍‌କାଙ୍କ ହସ୍ତକ୍ଷେପ ଫଳରେ ସଚ୍ଚୋଟ ଓ ଦକ୍ଷ ପୋଲିସ୍ ଅଫିସରମାନଙ୍କୁ କୋରାପୁଟ ଜିଲ୍ଲାରୁ ବଦଳି ନେଇଯିବାକୁ ପଡ଼ିଥିଲା । ଦୁର୍ନୀତି ପରାୟଣ ଖୋସାମୋଦିଆ ଅଫସରମାନଙ୍କୁ ବାଛି ବାଛି କୋରାପୁଟ୍ ଜିଲ୍ଲାରେ ଅବସ୍ଥାପିତ କରାଯାଇଥିଲା ।

ସହରରେ ଖାଦ୍ୟର କୃତ୍ରିମ ଅଭାବ ସୃଷ୍ଟି କରି ସୁନ୍ଦରମୂର୍ତ୍ତି ଅଜସ୍ର କଳା ଟଙ୍କାର ମାଲିକ ହୋଇଯାଉଥିଲେ । ତାଙ୍କର ଗୋଦାମ୍‌ଗୁଡ଼ିକରେ ପ୍ରଚୁର ଖାଦ୍ୟ ମହଜୁଦ୍ ରହିଥିଲା । କେସରରେ ଖେସାରି ମିଶାଇବା ଓ ବିଭିନ୍ନ ପ୍ରକାରର ତେଲରେ ଅପମିଶ୍ରଣ କରିବା ସେ ନିର୍ଦ୍ଦ୍ୱନ୍ଦ୍ୱରେ ସମାପନ କରୁଥିଲେ ।

ଅରୁଣାଭ ଓ ତାର ସହକର୍ମୀମାନେ ସିଦ୍ଧାନ୍ତ ନେଲେ ସୁନ୍ଦର ମୂର୍ତ୍ତିଙ୍କ ନେତୃତ୍ୱରେ ଚାଉଳ ଲୁଙ୍ଗି ସୁଜନି ବସ୍ତା ସବୁ ବଣ୍ଟାଗଲେ ବନ୍ଦୀ କରିବାର ବ୍ୟବସ୍ଥା କରିବେ କାରଣ କର୍ତ୍ତୃପକ୍ଷଙ୍କୁ ବାରମ୍ବାର ଜଣାଇବା ସତ୍ତ୍ୱେ ସେମାନେ ସହରର ସୁଜନି ଅଭାବ ଦୂରୀକରଣ ପାଇଁ କୌଣସି ପଦକ୍ଷେପ ନେଲେ ନାହିଁ । ଧନୀକଲ୍ୟାଣ ଯୁକ୍ତ ପ୍ରତିଷ୍ଠିତ ସମାଜର ବ୍ୟବହାର ଓ ରାଜନୀତି ଅରୁଣାଭକୁ ବ୍ୟଥିତ କରିଥିଲା । ନିଜକୁ ପ୍ରତିଷ୍ଠିତ ଶ୍ରେଣୀ ଓ ସମାଜରୁ ଅଲଗା କରିବା କାମନା ବହୁଦିନରୁ ତା ମନରେ ସ୍ଥାନ ଲାଭ କରିସାରିଥିଲା । ତେଣୁ ଅଧ୍ୟାପକ ଚାକିରିରୁ ବରଖାସ୍ତ ହେବା ତା ପକ୍ଷରେ ଅନାକାଙ୍କ୍ଷିତ ନଥିଲା ।

ଜଣେ ସୁନ୍ଦର ମୂର୍ତ୍ତିଙ୍କର ଚାଉଳ ଲୁଙ୍ଗି ସୁଜନି ବାଣ୍ଟିବା ଦ୍ୱାରା ଯେ ଦେଶର ସମସ୍ୟାର ସମାଧାନ ହୋଇପାରିବ, ଏ ମିଥ୍ୟାଶା ଅରୁଣାଭ ପୋଷଣ କରୁନଥିଲା । ସାରା ଦେଶର ଅର୍ଥନୀତିକୁ ଅସଂଖ୍ୟ ସୁନ୍ଦରମୂର୍ତ୍ତି ଅକ୍ଟୋପସ୍ ଭଳି ଶୋଷି ଚାଲିଥିଲେ । ଏମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ଦେଶରେ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇନଥିଲା । ଅରୁଣାଭର ମନରେ ଅହରହ ବିରାଜମାନ କରୁଥିଲା ଆମେରିକାର ପ୍ରଖ୍ୟାତ ଲେଖକ ଥୋରୋଙ୍କ ଉଜ୍ଜ୍ୱଳ ମୂର୍ତ୍ତି । ଦେଶର ଅନ୍ୟାୟୀ ସରକାରକୁ କର-ଦେବାକୁ ଅସ୍ୱୀକାର କରି ଥୋରୋ କାରାଗାରସ୍ଥ ହୋଇଥିଲେ । ସ୍ୱମତରେ ଦୃଢ଼ନିଷ୍ଠ ଥୋରୋ କାରାବରଣ କରିଥିବା ସମ୍ବାଦ ଆମେରିକାର ବିଦ୍ୱତ୍ ସମାଜରେ ଚହଳ ପକାଇଦେଇଥିଲା । ବିଶିଷ୍ଟ ଦାର୍ଶନିକ ଏମେର୍ସନ୍ ଥୋରୋଙ୍କୁ ଦେଖିବାପାଇଁ କାରାଗାରରେ ପଦାର୍ପଣ କରିଥିଲେ ।

ଏମର୍ସନ୍‌ଙ୍କ ପ୍ରଶ୍ନ ଥିଲା 'ତମେ କାହିଁକି କାରାଗାରରେ ଥୋରୋ ?' ପ୍ରଶ୍ନଶୁଣି ଥୋରୋ ଯେଉଁ ପ୍ରଶ୍ନ କରିଥିଲେ ଊନବିଂଶ ଶତାବ୍ଦୀର ଆକାଶରେ ତାହା ଧ୍ରୁବତାରା ଭଳି ଝଲସି ଉଠିଥିଲା ।

'ସରକାର ଯେତେବେଳେ ଅନ୍ୟାୟର ଅବତାର, ସେତେବେଳେ କୌଣସି ସତ୍ୟାନ୍ୱେଷୀ ଲୋକ ପକ୍ଷରେ କାରାଗାରଠୁ ଉତ୍କୃଷ୍ଟତର ସ୍ଥାନ

ଅଛନ୍ତି ?' ପ୍ରସିଦ୍ଧ ପ୍ରାବନ୍ଧିକ ଏମର୍ସନ୍ ସେଦିନ ମୂକ ହୋଇଯାଇଥିଲେ ।

ଅଶ୍ୱେତବର୍ଣ୍ଣ ଲେଖକଙ୍କର ଯେ ଏ ଦେଶରେ ବଞ୍ଚିବାର ଅଧିକାର ଅଛି, ଏହା ସାବ୍ୟସ୍ତ କରିବାକୁ ଅରୁଣାଭ ଭାଗ୍ୟବରଣ କରିବାକୁ ପ୍ରସ୍ତୁତ ଥିଲା ।

ନିର୍ଦ୍ଦିଷ୍ଟ ରବିବାର ସକାଳ ୮ ଘଣ୍ଟା ସମୟରେ ଅରୁଣାଭ ଓ ତାର ଆଦିବାସୀ ସାଥୀମାନେ ସୁନ୍ଦର ମୂର୍ତ୍ତିଙ୍କର ଗୋଦାମ୍ ସମ୍ମୁଖରେ ସମବେତ ହୋଇଯାଇଥିଲେ । ସେମାନଙ୍କର ଅଭିଯାନ ସମ୍ପର୍କରେ ପୂର୍ବରୁ ପ୍ରଚୁର ପ୍ରଚାର କରାଯାଇଥିଲା । ତେଣୁ ସେମାନେ ଗୋଦାମ୍ ପାଖରେ ପହଞ୍ଚିବା ପୂର୍ବରୁ ଅସଂଖ୍ୟ ଉତ୍ସୁକ ଦେଖଣାହାରି ରାସ୍ତାଉପରେ ସେମାନଙ୍କର ଆଗମନକୁ ଅପେକ୍ଷା କରି ଠିଆହୋଇ ରହିଥିଲେ ।

ଅରୁଣାଭ ଗୋଦାମ୍ ନିକଟରେ ପହଞ୍ଚିଲାବେଳକୁ ଗୋଦାମ୍‌ର ଅନତି ଦୂରରେ ସହରର ପ୍ରଧାନ ରାସ୍ତାରେ ପନ୍ଦର ଜଣ ସଶସ୍ତ୍ର ବନ୍ଧୁକ-ଧାରୀ ପୋଲିସ୍ ଅପେକ୍ଷାରତ ଥିଲେ ।

ଅରୁଣାଭ ଓ ତାର ସାଥୀମାନଙ୍କର ଧାରଣା ଥିଲା ସେମାନେ ଗୋଦାମ୍ ପାଖରେ ପହଞ୍ଚିବା ପୂର୍ବରୁ ସେମାନଙ୍କୁ ଗିରଫଦାର କରାଯିବ । କିନ୍ତୁ ପୋଲିସ୍ କୌଣସି ପ୍ରତିରୋଧ ନକରି ଯେତେବେଳେ ସେମାନଙ୍କୁ ଗୋଦାମ୍ ଆଡ଼େ ଅଗ୍ରସର ହେବାକୁ ସୁଯୋଗ ଦେଲା, ସେମାନେ ବିସ୍ମିତ ହୋଇଗଲେ । ସାଥୀମାନଙ୍କର ଗହଣରେ ଅରୁଣାଭ ଗୋଦାମ୍ ତାଲାକୁ ଯେତେବେଳେ ଥରେ ଦୁଇଥର ଝିଙ୍କିଦେଲା, ପୋଲିସ୍ ପକ୍ଷରୁ ଆଖିବୁଜା ଗୁଳି ଚାଲିଲା ।

ଅଳ୍ପ କେତେ ସେକେଣ୍ଡ୍ ମଧ୍ୟରେ ଅରୁଣାଭ ଓ ତାର ଡଜନେ ସହକର୍ମୀଙ୍କର ରକ୍ତରଞ୍ଜିତ ଦେହ ଲୋଟିପଡ଼ିଲା ଗୋଦାମ୍ ସମ୍ମୁଖସ୍ଥ ପ୍ରଧାନ ପଥ ଉପରେ ।

ସେଦିନ ଦେଶବାସୀ ଆଞ୍ଚଳିକ ସମ୍ବାଦରେ ଶୁଣିଥିଲେ, 'ଆଜି ପାହାନ୍ତିଆ ସମୟରେ ଉଦ୍‌ଭ୍ରାନ୍ତ ଦର୍ଶାର ସପୁଗଡ଼ କଲେଜର ଅଧ୍ୟାପକ

ଅରୁଣାଭ ଓ ତାଙ୍କ ସାଥିମାନେ ବରିଷ୍ଠ ଗାନ୍ଧୀବାଦୀ ନେତା ସୁନ୍ଦରମୂର୍ତ୍ତିଙ୍କ ଘରେ ପ୍ରବେଶ କରୁଥିବାବେଳେ କର୍ତ୍ତବ୍ୟ ତତ୍ପର ପୋଲିସ୍ କର୍ମଚାରୀ କେତେଜଣ ସେଠାରେ ପହଞ୍ଚିବାରୁ ଉଗ୍ରପନ୍ଥୀ ଓ ପୋଲିସ୍ ମଧ୍ୟରେ ସଂଘର୍ଷ ଘଟି ଅରୁଣାଭ ଓ ତାଙ୍କର ବାରଜଣ ସହକର୍ମୀ ନିହତ ହୋଇଛନ୍ତି । ଏଭଳି ଏକ ଦୁର୍ଦ୍ଧର୍ଷ ଅସ୍ତ୍ରଧାରୀ ଉଗ୍ରପନ୍ଥୀ ଦଳକୁ ନିଶ୍ଚିହ୍ନ କରିଥିବା ବାହାଦୁର୍ ପୋଲିସ୍ କର୍ମଚାରୀମାନଙ୍କୁ ପୁରସ୍କୃତ କରିବାପାଇଁ ରାଜ୍ୟ ସରକାର ନିଷ୍ପତ୍ତି କରିଛନ୍ତି ।'



ସମ୍ବାଦ ଶୁଣିଥିଲି ଜସ୍ନା ।

ଚକ୍ଷୁରେ ତାର ପଲକ ପଡ଼ୁନଥିଲା ।

ଖୋକା ମୁଗୁନି ପଥର ଭଳି ସୁନ୍ଦର ଓ କଠିନ ମୁଖରେ ତାର ଲେଶମାତ୍ର ଭାବାନ୍ତର ଲକ୍ଷ୍ୟ କରଯାଉ ନଥିଲା ।

ଦୈନନ୍ଦିନ ରୁଟିନ୍‌ରେ ସାମାନ୍ୟତମ ପରିବର୍ତ୍ତନର ସ୍ପର୍ଶ ମଧ୍ୟ ଲାଗି ନଥିଲା । ତାର ସାଥି ସହକର୍ମୀମାନେ ଜାଣିପାରିଲେନି ତାର ଆକାଶରୁ ସୂର୍ଯ୍ୟ ଚନ୍ଦ୍ର ତାର ସମସ୍ତେ ବିଦାୟ ନେଇ ସାରିଚନ୍ତି । ଟେନିସନ୍‌ଙ୍କ କବିତାରୁ ଧାଡ଼ିଏ ଆବୃତ୍ତି କରିଥିଲା ଜସ୍ନା ।

'It is better to have loved nnd lost
Than not to have loved at all'

'ଆଦୌ ପ୍ରେମ ନକରିବା ଅପେକ୍ଷା ପ୍ରେମକରି ବରଂ ହରାଇବା ଶ୍ରେୟସ୍କର ।'

ଅର୍ଦ୍ଧରାତ୍ରୀର ଘନ ଅନ୍ଧାର ଯେତେବେଳେ ନିଃସଙ୍ଗ କକ୍ଷରେ ଜସ୍ନାକୁ ଭେଟିଲା, ସେ ଶୁଣିପାରିଲା ଜସ୍ନାର ସ୍ୱର—

'ଅପେକ୍ଷା କର ଅରୁଣାଭ, ଜସ୍ନା ତମ ପାଖକୁ ଯିବ ।'

ଟିକଏ ପରେ ଜସ୍ନା କହିବାର ଶୁଣାଗଲା, 'ମୁଁ କାଲୁ ଖାତୁରେ ପଳାୟନ କରିବନି ଅରୁଣାଭ । ମୋ ଯିବାଦିନ ପ୍ରଭାତରେ ଜଳଜଳିବ ଛମାସ୍ମାନ ସୂର୍ଯ୍ୟ ।'

ଧାବମାନ ସମୟ ପଛରେ ଫିଙ୍ଗି ଦେଇଥିଲା ଅରୁଣାଭର ମୃତ୍ୟୁକୁ ।

ରାୟଗଡ଼ ସହର ଧୀରେ ଧୀରେ ଭୁଲିଗଲା ଓଡ଼ିଶାର କେଉଁ ଅଖ୍ୟାତ ଅଞ୍ଚଳର ଜଣେ ଯୁବକ ଅନୁଶୋଭ ଚାର ଓହ୍ଲଙ୍ଗରେ କେବେ ଇତିହାସ ସୃଷ୍ଟି କରିଥିଲା ।

ରାୟଗଡ଼ର ବ୍ୟବସାୟୀ ସମାଜ ହୃଷ୍ଟିର ଆଶ୍ୱାସ ମାରି ଲୁଣ୍ଠନକୁ ଆଇନ ସମ୍ମତ କରି ଚାଲିଥିଲା । ଦୁର୍ନୀତିଗ୍ରସ୍ତ ନେତା ଓ ଅଫିସରଙ୍କ କଳେବରଗୁଡ଼ିକ ପ୍ରଚୁର ମୋଦ ସଂଗ୍ରହ କରି ଚାଲିଥିଲେ ।

ହଠାତ୍ ସହରରେ ଦେଖାଦେଇଥିଲା ଜମ୍ବା । ସେତେବେଳେ ଜମ୍ବାର ଆଗମନ ସହରବାସୀଙ୍କ ପକ୍ଷରେ ଆଦୌ ଗୁରୁତ୍ୱପୂର୍ଣ୍ଣ ନଥିଲା । ମାତ୍ର ଏକ ସପ୍ତାହ ମଧ୍ୟରେ ରାୟଗଡ଼ ସହରର ଖବର ବି ବି ସିର ପୃଥିବୀ ସମ୍ବାଦ ମଧ୍ୟରେ ସ୍ଥାନ ପାଇବାର ଯୋଗ୍ୟତା ହାସଲ କରିନେଲା ।

ଘଟଣାଟି ଘଟିଥିଲା ଜନ୍ମାଷ୍ଟମୀ ରାତିରେ । ଅର୍ଦ୍ଧରାତିରେ ଥାନା ଘଣ୍ଟାରେ ଯେତେବେଳେ ବାରଟା ବାଜିଲା, ସହରର ପ୍ରଧାନ ରାସ୍ତାଗୁଡ଼ିକରେ କୋଳାହଳର ମାତ୍ରା ବୃଦ୍ଧି ପାଇବାରେ ଲାଗିଲା ।

କଣ ଘଟୁଛି ଏ ସମ୍ପର୍କରେ ସହରର ଆଇନ ଓ ଶୃଙ୍ଖଳା ରକ୍ଷକ-ମାନେ ସଚେତନ ହେବା ପୂର୍ବରୁ ସମସ୍ତ ମୁଖ୍ୟ ମୁଖ୍ୟ ବ୍ୟବସାୟୀଙ୍କ ସମ୍ପତ୍ତି ଲୁଟ୍ ହୋଇଯାଇଥିଲା । ରାତି ୪ଟା ବେଳେ କଲେଜ ନିକଟସ୍ଥ O M P ବାଟାଲିୟନ୍‌ର ଲୋକେ ଯେତେବେଳେ ବାର୍ତ୍ତା ପାଇଲେ, ସେତେବେଳକୁ ଲୁଣ୍ଠନକାରୀ ଦଳ ସହର ଛାଡ଼ି ଚାଲିଯାଇଥିଲେ ।'

କୋଟି କୋଟି ଟଙ୍କା ଓ ମହଣ ମହଣ ସୁନାର ଅପହରଣ ବ୍ୟବସାୟୀଗୋଷ୍ଠୀର ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ଏ ଅଭୂତପୂର୍ବ ଡକାୟତି ଫଳରେ ସେମାନେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଯାଇଥିଲେ ।

ବନ୍ଧୁକ ଓ ହ୍ୟାଣ୍ଡଗ୍ରାନେଡ୍ ଲୁଣ୍ଠନକାରୀମାନେ ବ୍ୟବହାର କରି ଲୋକଙ୍କୁ ଆହତ କରିଥିଲେ ମଧ୍ୟ ସେମାନେ କାହାକୁ ହତ୍ୟା କରିନଥିଲେ ।

ସହରରେ ପ୍ରବଳ ଜନରବ ବ୍ୟାପି ଯାଇଥିଲା ଯେ ସହରର ଓ ଜିଲ୍ଲାସ୍ତରର ପୋଲିସ୍ ଓ ପ୍ରଶାସନିକ କର୍ତ୍ତୃପକ୍ଷଙ୍କ ମୁହଁ ଲୁଣ୍ଠନଧନ ଦ୍ୱାରା

ସିଲ୍ କରାଯାଇ ପାରନ୍ତି ଓ କ୍ଷମତାସୀନ ଦଳର ସମସ୍ତ ବରିଷ୍ଠନେତା ଲୁଣ୍ଠନଧନର ଅଂଶୀଦାର ।

ଅନୁସନ୍ଧାନ ପରେ ଜସ୍ପା ପ୍ରମୁଖ ଅନ୍ୟ କେତେଜଣଙ୍କ ନାଁରେ ପୋଲିସ୍ ମକଦ୍ଦମା ରୁଜୁ କରିଥିଲା । ଉପଯୁକ୍ତ ଅସାମୀଙ୍କର ପକ୍ଷ ସମର୍ଥନ କରିବାକୁ ପ୍ରଦେଶର ନାମ୍‌ଜାଦା ଦାମୀ ଆଡ୍‌ଭୋକେଟ୍‌ମାନେ ଆଗେଇ ଆସିଥିଲେ ।

ଜସ୍ପା ଓ ତାର ସାଥୀମାନେ ସେନ୍ତ ଗଷୀରେ ଦୂରବର୍ତ୍ତୀ ଭିନ୍ନଭିନ୍ନ ସ୍ଥାନରେ ଥିବା ସ୍ଥମାଣ କୋଟ୍‌ରେ ଦାଖଲ କରିଥିଲେ ।

ଜସ୍ପା ଓ ତାର ସାଥୀମାନେ ଖଲାସ୍ ହେବାଦିନ ଏକ ବିରାଟ ଶୋଭାଯାତ୍ରା ରାୟଗଡ଼ ସହର ପରିକ୍ରମା କରିଥିଲା । ଶୋଭାଯାତ୍ରାର ଅଗ୍ରଭାଗରେ ଦୁଇଟି ପ୍ରକାଣ୍ଡ ତୈଳଚିତ୍ର ଶୋଭାପାଉଥିଲା । ଗୋଟିଏ ଥିଲା ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର; ଅପରଟି ଥିଲା ଅଧ୍ୟାପକ ଅରୁଣାଭ ମିଶ୍ରଙ୍କର । ସାମ୍ବାଦିକମାନେ ଲେଖିଥିଲେ ଯେ ଶୋଭାଯାତ୍ରାରେ ପ୍ରାୟ ପଚିଶ ହଜାର ଲୋକ ଯୋଗ ଦେଇଥିଲେ ।

ଶୋଭାଯାତ୍ରାର କିଛିଦିନ ପରେ ଜସ୍ପା ମୁଖ୍ୟମନ୍ତ୍ରୀଙ୍କଠୁ ଏକ ବାର୍ତ୍ତା ପାଇଥିଲା । ସେ ଜସ୍ପାକୁ ମନ୍ତ୍ରୀମଣ୍ଡଳରେ ଯୋଗଦେବାପାଇଁ ଆମନ୍ତ୍ରଣ କରିଥିଲେ । ସଫଳତାର ଶୀର୍ଷ ଦେଶରେ ପାଦଦେଇ ମଧ୍ୟ ଜସ୍ପାର ମାନସିକ ଶାନ୍ତି ବିପନ୍ନ ହୋଇପଡ଼ିଥିଲା ।

ନିର୍ଜନ କୋଠରୀରେ ଅରୁଣାଭର ତୈଳଚିତ୍ର ଆଗରେ ସେ ସ୍ୱଗତ କଥନ କରୁଥିଲା ।

'କହ । ତମେ କହ ଅରୁଣାଭ । ତମର ସବଜସ୍ପ ଅପେକ୍ଷା ଏ ବଜସ୍ପ କ'ଣ ଦେଶପକ୍ଷରେ ବେଶୀ ମଙ୍ଗଳ କର ?

ମୁଁ ଆଜି ପାରୁନି ପ୍ରିୟ ! ଏବେ ମୋ ପାଦତଳେ ପଡ଼ିରହିଛି ଯଶ, କ୍ଷମତା ଓ ବୈଭବର ପୂଜାଥାଳି ।

ମଣିଷର ଇତିହାସରେ ଭଲ ଏବଂ ମନ୍ଦର ସଙ୍ଘା କ'ଣ ସବୁବେଳେ ନିରୂପଣ କରୁଥିବା କେବଳ ସଫଳତା ?

ସଫଳ ଡକାୟତ ଯୁଗେ ଯୁଗେ ପାଉଛି ରାଜାଧିରାଜାର ଉପାଧି; ଆଉ ବିଫଳ ଦେଶ ଭକ୍ତର ରକ୍ତ ଶୋଷିନେଉଛି ଅଜଣା ଅଶୁଣା ମୂଲକ । କୁହ ! ଏତେ ବଡ଼ ମିଥ୍ୟାର ଭାର ବହନ କରି ମୁଁ ବଞ୍ଚିବି କେମିତି ?

ତମର ଗମ୍ଭୀର ସ୍ୱର ମୁଁ ଶୁଣିପାରୁଚି,'ଅଶୁଦ୍ଧ ସାଧନ ବ୍ୟବହାର କରି ଶୁଦ୍ଧସାଧ୍ୟକୁ ପାଇବା କ'ଣ ସମ୍ଭବ ? ମନେରଖ ଜଗ୍ଗା, ସାଧ୍ୟ ହେଉଛି ସାଧନର ଘନୀଭୂତ ରୂପ ।'

ମୋ ଆଗରେ ଲମ୍ବି ଯାଇଛି ପ୍ରଲୋଭନର ଅରଣ୍ୟ ।

ଏକ ପ୍ରଚଣ୍ଡ ଜିଘାଂସା ଏପର୍ଯ୍ୟନ୍ତ ମୋର ଚଳନକୁ ଯୋଗାଇ ଆସୁଥିଲା ଶକ୍ତି ।

ଆଜି ମୋର ପ୍ରତିହିଂସାର ବ୍ରତ ଉଦ୍‌ଯାପିତ ହୋଇଛି । ଯେଉଁ ଅତ୍ୟାଚାରୀମାନେ ଆଲେଖର ଉପସ୍ଥିତିକୁ ଶେଷ କରିଦେଇଥିଲେ, ସେମାନେ ଏବେ ଧ୍ୱସ୍ତ ।

ପାଗଳମା ଭଳି ମୁଁ ଆଗେଇ ଚାଲିଥିଲି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ । ତମର ଅସମୟ ବିଦାୟ ମୋ ଅନ୍ତରରେ ଜନ୍ମ ଦେଇଥିଲା ପ୍ରଚଣ୍ଡ କ୍ରୋଧ ଓ ଅଭିମାନକୁ ।

ଆଜି ମୁଁ ଅନୁଭବ କରୁଚି ଚରମ ଶୂନ୍ୟତା ମୋତେ ଘେରିଯାଇଛି । ଏ ଅବସ୍ଥାରେ ତମର ଅନୁପସ୍ଥିତିକୁ ସହିବା ମୋ ପକ୍ଷରେ କଷ୍ଟକର ହୋଇପଡ଼ିଲାଣି ।

ମୋ ଜୀବନରେ ପ୍ରଥମଥର ପାଇଁ ବହୁତ କିଛି କାମ ମୁଁ ଏଥର କରିପାରିବି ।

କେଉଁଟି ଅଧିକ ଶ୍ରେୟସ୍କର ? ମିଥ୍ୟାର ପତନ ଉପରେ ନିର୍ମିତ ପ୍ରଭାବଶାଳୀ ଜୀବନ ନା ସତ୍ୟର ଆଲୋକକୁ ଆଲିଙ୍ଗନ କରୁଥିବା ସ୍ୱନିର୍ବାଚିତ ମୃତ୍ୟୁ ?

'To be or not to be, that is the question'.

(ବଞ୍ଚିବା କିମ୍ବା ମରିବା, ଏହାହିଁ ଏକମାତ୍ର ପ୍ରଶ୍ନ ।)



## ଲେଖକଙ୍କ ଅନ୍ୟାନ୍ୟ ପୁସ୍ତକ—

୧ । ରଂଶର ଅସିଧାରେ (ଐତିହାସିକ ଉପନ୍ୟାସ)

୨ । ଝଡ଼ର୍ଟି ଦୁରନ୍ତ, ମୃତ୍ୟୁର ଚରଟ (ଉପନ୍ୟାସ)

୩ । ଡାକରା ପ୍ରଭା, ଅଳକ ରଙ୍ଗ । (ଉପନ୍ୟାସ)

୪ । ମୋ ଦେଶ ନୁହେ ଭୁବନେଶ୍ୱର । (କବିତା)

୫ । ମୋ କବିତା ଲୁଅଁ ନାହିଁ । (କବିତା)